ଦୂଜାଗଁର

# ଉତ୍ସର୍ଗପତ୍ର ।



ଉତ୍କଳର ଆଶାଭରସା-ସ୍ଥଳ ଶିକ୍ଷିତ ଯୁବକମାନଙ୍କ କରକମଳରେ ଏହି କ୍ଷୁଦ୍ର ପୁସ୍ତକ ଖଣ୍ଡିକ ସସ୍ନେହରେ ଉପହାର ସ୍ୱରୂପ ପ୍ରଦାନ କଲି । ଆକାର ଅବା ଗୁଣରେ ଏହା ଉପହାରର ଉପଯୋଗୀ ବୋଲି ନିଶ୍ଚୟ ସ୍ୱୀକାର କରାଯାଇ ନ ପାରେ । ମାତ୍ର ଅର୍ଥପ୍ରୟାସୀ ନିର୍ଧନ ଧନୀ ଲୋକମାନଙ୍କୁ କ୍ଷୁଦ୍ର ବସ୍ତୁ ଭେଟି ଦେଇ ସେମାନଙ୍କଠାରୁ ମୂଲ୍ୟବାନ୍ ବସ୍ତୁ ପ୍ରତ୍ୟାଶା କରିଥାଏ । ଏହି ସାମାନ୍ୟ ଉପହାର ବଦଳରେ ଶିକ୍ଷିତ ଯୁବକମାନଙ୍କଠାରୁ ଉତ୍କୃଷ୍ଟତର ପୁସ୍ତକ ପ୍ରତ୍ୟାଶା କରେଁ ।

"ନ ଯାଚ୍ଞା ସତ୍‌ପକ୍ଷେ ଭଜତି ଚ କଦାଚିତ୍ ବିଫଳତାଂ ।"

ଗ୍ରନ୍ଥକାର ।

# ସୂଚୀପତ୍ର ।



ବିଷୟ — ପୃଷ୍ଠା


| | |
|---|---|
| ପୂଜାଫୁଲ | ୧ |
| ମାନସ ପ୍ରତିମା | ୩ |
| ସ୍ତୋତ୍ର ... | ୪ |
| ନିୟମ ପାଳନ ... | ୫ |
| ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ ... | ୬ |
| ଭୁଲିବାର ... | ୭ |
| ତୁମ୍ଭ ପଦେ ସ୍ଥାନ ... | ୯ |
| ଚିତ୍ରକର ... ... | ୧୦ |
| ଜନ୍ମଭୂମି ... ... | ୧୧ |
| ଜଗତ ସ୍ୱପ୍ନମୟ ... | ୧୨ |
| ନିବେଦନ | ୧୪ |
| ଶେଷଦନ ... | ୧୫ |
| ଉତ୍କଳ ... | ୧୬ |
| କପୋତ ଦମ୍ପତି | ୧୮ |
| ମହାଧାମରେ ମିଳନ ... ... | ୧୮ |
| ବାଟବଣା ... ... | ୨୦ |
| ଛଳନା ... ... | ୨୧ |
| ସଙ୍ଗଲୁଭ ... ... | ୨୨ |
| ଯୌବନ ଜୀବନ | ୨୩ |

| ବିଷୟ | | | | ପୃଷ୍ଠା। |
|---|---|---|---|---|
| ରାଜ୍ୟ ଗଠନ | | | | ୨୪ |
| ପ୍ରଜାପତି | | | ... | ୨୫ |
| ସ୍ୱର୍ଗର ନବଦ୍ୱାର | | | ... | ୨୭ |
| ବିଧବାର ଅଭିଶାପ | ... | ... | ... | ୨୮ |
| ଶାନ୍ତିକାନନ | | | | ୩୩ |
| ଧର୍ମରାଜ୍ୟ | ... | | | ୩୭ |
| ପଦ୍ୟମାଳା | ... | | | ୪୩ |





# ପୂଜାଫୁଲ ।



## ପୂଜାଫୁଲ ।



କୁସୁମ ସମ୍ଭାରେ          ଦେଇ ପୂଜିବାରେ
ଏକାନ୍ତ ବାସନା ପ୍ରାଣେ,
କେବଳ କୁସୁମ          ପ୍ରଭୁ-ମନୋରମ
ବୃତ୍ତାନ୍ତ ମୁଁ ତ ନ ଜାଣେ ।
ନୀଳ ରକ୍ତ ପୀତ          ଲୋହିତ ଧୂସର
ସୁଗନ୍ଧ ସୁନ୍ଦର କେତେ
ପୂର୍ଣ୍ଣ ଜଗତରେ          ଦେଖେଁ ନୟନରେ
ବିବିଧ ଆକାରେ ଯେତେ ।
ମନୋଲୁବ୍ଧ ବାସେ          ବିଶ୍ୱରେ ବିକାଶେ
ଆମୋଦର ଦିଶି ଦିଶି,
ଋତୁ ପର୍ଯ୍ୟାୟରେ          ବିବିଧ ବର୍ଣ୍ଣରେ
ପ୍ରସ୍ଫୁଟିତ ହବା ନିତି ।

ଢବା ମନୋରମେ ଶାଖା ଲତା ଦ୍ରୁମେ
ନବ ପେଲବ ପଲ୍ଲବେ ,
ଫୁଟି ଚହଟଇ ମଧୁ ଗନ୍ଧେ ବାଇ
ବେଷ୍ଟିତ ମଧୁପ ସର୍ବେ ।
ଅରୁଣ ପ୍ରକାଶେ ସୌନ୍ଦର୍ଯ୍ୟ ବିକାଶେ
ବେଦେ ପ୍ରଣବ ଓଁକାର,
ଝରଇ ନୀହାର ମୁକୁତାର ହାର
ଅଲଙ୍କାରେ ଅଳଙ୍କାର ।
କେମନ୍ତ ନିର୍ମଳ କେମନ୍ତ ସୁଢଳ
ରଚନାକୌଶଳ ସୀମା,
ରୂପ ରସ ବାସେ ଗୁଣରେ ବିକାଶେ
ଅପରୂପ ମଧୁରିମା ।
ତାହାର ମହିମା ଗୁଣର ଗରିମା
ଜଗତେ ରଟାଏ ଖ୍ୟାତି,
ରଚନା ସୁଷମା ଲାବଣ୍ୟର ସୀମା
ପ୍ରକଟେ ଅପୂର୍ବ ପ୍ରୀତି ।
ଯେ ପୁଷ୍ପ ଲଭିଛେ ଦେବେ ଅପ୍ରମେଛେ
ପୁଷ୍ପ ଜଗତେ ବିସ୍ତାର,
ମଳିନ ହସ୍ତରେ ତୋଳି ସେ ପୁଷ୍ପରେ
ବିଡମ୍ବନା ପୂଜିବାର ।
ଭକ୍ତି ପୁଷ୍ପ ଜଳେ ପବିତ୍ରତା ଜଳେ
ଧୌତ କରି ବାଞ୍ଛା ମନେ—
କରି ସମର୍ପଣ ପ୍ରଭୁଙ୍କ ଚରଣ
ଦୃଢ଼ ଥିବ ଅନୁକ୍ଷଣେ ।



# ମାନସ ପ୍ରତିମା ।



"ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ
ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ ।
ତମେବ ଭାନ୍ତମନୁଭାତି ସର୍ବଂ
ତସ୍ୟ ଭାସା ସର୍ବମିଦଂ ବିଭାତି ।" ଉପନିଷଦ୍ ।

ବିଶାଳ ଅବନୀ ନଭ ନୟନେ ବିକାଶେ,
ଅଣୁ ରୂପେ ଭାସେ ମାତ୍ର ଅନନ୍ତ ଆକାଶେ ।
ବିଶ୍ୱ ବ୍ରହ୍ମାଣ୍ଡର ସ୍ରଷ୍ଟା ଅନନ୍ତ ମହାନ,
କି ଆକାରେ ତାଙ୍କ ରୂପ କରିବ ନିର୍ମାଣ ।

ଯେ ପ୍ରଭୁ ଇଙ୍ଗିତେ ବିଶ୍ୱ ଅପାର ଅସୀମା,
କେଉଁ ଉପକରଣରେ ଗଢ଼ିବ ପ୍ରତିମା ।
ବାକ୍ୟ-ମନ-ଅଗୋଚର କଳ୍ପନା-ଅତୀତ,
ଋଷିଗଣ ନ ପାଇ ଧ୍ୟାନେ ଅବସନ୍ନ ଚିତ୍ତ ।

ଚନ୍ଦ୍ର ସୂର୍ଯ୍ୟ ଗ୍ରହାବଳୀ ନକ୍ଷତ୍ରମଣ୍ଡଳ;
ଚଞ୍ଚଳା ଚପଳାଜ୍ୱାଳା ଜ୍ୱଳନ୍ତ ଅନଳ,
ବିକାଶେ ଜଗତେ ଜ୍ୟୋତି ଯାହା ଆଦେଶରେ,
ସେ ସର୍ବ ଅଶକ୍ତ ବିଭୁ ବର୍ଣ୍ଣ ବିକାଶରେ ।

ହେ ମହାନ ମହେଶ୍ୱର ମାନସଦେବତା,
ପ୍ରାଣେ ଅନୁଭବେଁ ସର୍ବସ୍ଥାନେ ତୁମ୍ଭ ସତ୍ତା ।
ନିଃଶ୍ୱାସେ ଶୋଣିତାଧାରେ ନିତ୍ୟ ବିଦ୍ୟମାନ,
ହୃଦୟମନ୍ଦିରେ ଶୁଭେ ଗମ୍ଭୀର ଆହ୍ୱାନ ।

ହେ ପ୍ରଭୁ ସଶ୍ୟାଗତ କର ମୋର ଚତ୍ତ,
ଗାଇବ ଶରଳେ ବସି ସ୍ୱର୍ଗୀୟ ସଗୀତ ।
ଗୁଣାଗତ ବର୍ଣ୍ଣାଗତ ସର୍ବମୂଳାଧାର,
ମାନସପ୍ରତିମା ମୋର ଦେଇ ନମସ୍କାର ।



# ସ୍ତୋତ୍ର ।



ଯଜ୍ଜାଗ୍ରତ ଦୂରମୁଦୈତି ଦୈବନ୍ତଦୁ-
ସୁପ୍ତସ୍ୟ ତଥୈବୈତି ଦୂରଙ୍ଗମଂ
ଜ୍ୟୋତିଷାଂ ଜ୍ୟୋତିରେକଂ
ତନ୍ମେମନଃ ଶିବ ସଙ୍କଳ୍ପମସ୍ତୁ ।—ଯଜୁର୍ବେଦ ।

ଯେ ଦେବତା ଜାଗରଣେ ଥାନ୍ତି ଦୂରେ ଦୂରେ,
ସ୍ୱପନରେ ଅନୁଭବୁଁ ହୃଦ ଅନ୍ତଃପୁରେ,
ଅନନ୍ତ ଜ୍ୟୋତିର ଜ୍ୟୋତି ରୂପ ବିଦ୍ୟମାନ,
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ଯାହା ବଳେ କ୍ରିୟାବାନ ଜଗତର ଲୋକ,
ଅନନ୍ତ ଜ୍ୟୋତିର ଜ୍ୟୋତି ହୃଦସ୍ଥ ଆଲୋକ,
ପରମ ଜ୍ଞାନର ସୁଧା ଅନନ୍ତ ମହାନ
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ହୋଇଛନ୍ତି ହେଉଛନ୍ତି ହେବେ ଯା କୃପାରେ
ଅଚେତ ଚେତନ ଲୋକ ଜଗତ ସଂସାରେ,
ଅମୃତ ଉତ୍ସରେ ବସି ସର୍ବ ସମାଧାନ
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ମନସ୍ୱୀ ତପସ୍ୱିଗଣ ଯୁଗ ଯୁଗାନ୍ତରେ
ଯଜ୍ଞ ଅନୁଷ୍ଠାନ କରିଥାନ୍ତି ନିରନ୍ତରେ,
ବେଦବିଦ ସପ୍ତ ହୋତା ଯଜ୍ଞ ଅନୁଷ୍ଠାନ,
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ଚକ୍ରନେମି ଯୁକ୍ତ ଅର ସମାନ ସଂସାର,
ଋକ ଯଜୁ ସାମବେଦ ନିଖିଳ ଆଧାର,
ବିଶ୍ୱସୃଷ୍ଟି ମୂଳ ମହାମହେଶ ମହାନ
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ନିପୁଣ ସାରଥି ଯଥା ରଥର ଚାଳକ,
ଯେଉଁ ମହାଦେବ ବିଶ୍ୱସୃଷ୍ଟି ନିୟାମକ,
ସେହି ମହାମହେଶ୍ୱର ଅନନ୍ତ ମହାନ
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।



## ନିୟମ ପାଳନ ।



ସୂର୍ଯ୍ୟାଚନ୍ଦ୍ରମସୌ ଧାତାଯଥା ପୂର୍ବମକଳ୍ପୟତ୍
ଦିବଂ ଚ ପୃଥିବୀଂ ଚାନ୍ତରୀକ୍ଷମଥୋ ସ୍ୱଃ ।—ଋଗ୍‌ବେଦ ।

ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ଅନନ୍ତ ଗଗନେ
ସ୍ୱ ସ୍ୱ କକ୍ଷେ ନିୟମିତ ଗତି ଅନୁକ୍ଷଣେ,
ଅନନ୍ତ ଆକାଶମାର୍ଗେ ଅନନ୍ତ ଭାସ୍କର
ଅବସ୍ଥିତ ଆକର୍ଷଣ କରି ପରସ୍ପର ।
ଏ ବିଶ୍ୱ ବ୍ରହ୍ମାଣ୍ଡ କାର୍ଯ୍ୟ ଦେଖ ଅନୁମାନ,
ଜଡ଼ପିଣ୍ଡଗଣ ଛନ୍ତି ପ୍ରଭୁ ଆଜ୍ଞା ମାନି ।

ତ୍ରିତାପଦଗ୍ଧ କଷ୍ଟମାର୍ଗ ବିଷମ ଭାବନା
କଲେ ମନପ୍ରାଣ ଅବସନ୍ନ ଯାଏ ଜଣା ।
ପ୍ରତ୍ୟକ୍ଷ ଆଦର୍ଶ ଦେଖି ହେ ମାନବଗଣ,
କର ନାହିଁ ବିଶ୍ୱପତି ନିୟମ ଲଙ୍ଘନ ।



## ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ ।



ସମଧର୍ମୀ କେତେ ପତ୍ର ଥିଲେ ସନ୍ନିତରେ,
ମଣ୍ଡିତ ଶୋଭିତ ହୋଇଥିଲୁଁ ପାଦପରେ ।
କରିଛନ୍ତି ଏକେ ଏକେ ସମସ୍ତେ ପ୍ରୟାଣ,
ଏକାକୀ ରହିଛି ଜୀର୍ଣ୍ଣଦଶା ମ୍ରିୟମାଣ ।
ନୀରସ ବକ୍ଳତ ଦେହ ହସେ ଅସୁନ୍ଦର,
ଶୀତ ବାତେ କମ୍ପମାନ ସର୍ବକଳେବର ।
ବସନ୍ତ ଅଗମେ ନବପଲ୍ଲବ ସକଳ
ଦିଶୁଛନ୍ତି ମନୋହର କେମନ୍ତ ସୁଢଳ ।
ପାଦପର ରସ ବୃଥା କରେଁ ଅପଚୟ,
ହେଉଛି କୋମଳ ପତ୍ର ଖାଦ୍ୟ ଅପବ୍ୟୟ ।
ଅଦ୍ୟ ମୁଁ ଶାଖାରେ ଲାଗିଥିବି କ ଆଶୟେ,
ସ୍ଥାନ ଲଭି ବୃଦ୍ଧି ପ୍ରାପ୍ତ ହେବେ କିଶଳୟେ ।
ଆଶୀର୍ବାଦ ! ଆଶୀର୍ବାଦ ! ନବ ପତ୍ରଦଳ,
ଛାୟାଦାନେ ତୃପ୍ତ ପାନ୍ଥ ପାଦପ ସମୂଳ ।



# ଭୁଲିବାର ।

କାମନା ବାସନା ସ୍ନେହ ସୁଖ ଶାନ୍ତି ଆଶା
ସମାପ୍ତ ବିଲୁପ୍ତ ସର୍ବ ପ୍ରେମ ପ୍ରୀତି ଭାଷା ।
ଦାରୁଣ ଯାତନା ମନେ ଅଶ୍ରୁ ନୟନରେ
ସହୁଛି ସହିବି ଚିରଦିନ ଜୀବନରେ ।
ସୁଖ ଦୁଃଖ କେତେ କଥା ଯାଇଛି ପାସୋରି,
ଭୁଲିବାର ନୁହେ ଯାହା ଭୁଲିବି କିପରି !
ଶୋକାନଳେ ଦଗ୍ଧପ୍ରାଣ ସହେଁ ଯେ ଯାତନା,
କେ ଶୁଣିବ କେ ବୁଝିବ ହୃଦୟ ବେଦନା ।
ମନକଥା ଶୁଣିବାକୁ ଆଉ କେହି ନାହିଁ,
ସାନ୍ତ୍ୱନା ଲଭିବ ପ୍ରାଣେ କାହା ମୁଖ ଚାହିଁ !
ଅପ୍ରକାଶ ମନ କଥା ଦଗ୍ଧ କରେ ପ୍ରାଣ,
ବକ୍ଷୋଷ୍ଠକେ ବଜ୍ର ପୂଯ ଅସ୍ଥି ଭେଦେ ଜାଣ ।
ସୁଖ ଦୁଃଖେ ସମଭାଗୀ ଦେଖୁ ନାହିଁ ଜଣେ,
ମାନବ ସ୍ୱଭାବ ସଦା ସ୍ୱାର୍ଥ ଅନ୍ୱେଷଣେ ।
ଭୁଲିଲେ ଲଭନ୍ତି ଅବା କ୍ଷଣିକ ସାନ୍ତ୍ୱନା,
ଅଙ୍କିତ କଳ୍ପନାମୂର୍ତ୍ତି ହୃଦେ ଯାଏ ଜଣା ।
ଥିଲା ମୋର ସୀମନ୍ତିନୀ ହୃଦବିହାରିଣୀ,
ସଞ୍ଜୀବନୀ-ମନ୍ତ୍ର-ମରୁ-ସୁଧା-ନିର୍ଝରିଣୀ ।
ଅନାହୂତରୂପେ ହୃଦେ କରେ ବିଚରଣ,
ସ୍ୱପନେ ବା ଜାଗରଣେ କରୁଛି ସ୍ମରଣ ।
ନୀଳିମା-ଗଗନେ ବନେ ନିକୁଞ୍ଜ-କାନନେ
ଭାସିଯାଏ ରୂପଛାୟା ପ୍ରଫୁଲ୍ଲ ସୁମନେ ।

ଛିନ୍ନ ମୋ ଜୀବନଗ୍ରନ୍ଥି ଛିନ୍ନ ତାର ବୀଣା,
ସସାର ଅସାର ଶୂନ୍ୟମୟ ତାହା ବିନା ।
ଶୂନ୍ୟ ହୃଦସିଂହାସନେ କଳ୍ପନା ପ୍ରତିମା
ବସାଇ କରିବ ଧାନ ରୂପ ମଧୁରିମା ।
କାନ୍ଦିବି ନିର୍ଜନେ ବସି ସନ୍ଧ୍ୟା ନୀରବେ,
ବ୍ୟର୍ଥ ଜୀବନଟା ଯେତେ ଦିନ ଥିବ ଭବେ ।
ଘଟିଥିଲା ପଦେ ମଣି ଜୀବନର ସାର,
ମୁଁ ତ କିଛି କରି ନାହିଁ ପ୍ରତିଉପକାର ।
ସ୍ୱହସ୍ତେ ଦେଇଛି ତାକୁ ଶୁଆଇ ଚିତାରେ,
ଦେଖିଛି ଆକାଶେ ଉଡିଗଲା ଧୂମାକାରେ ।
ପୋଡ଼ିଛି ଶରୀର ତାର, ପୋଡ଼ୁଛି ମୋ ମନ,
ଦହିବ ମୋ ଦେହ ଦିନେ ମହାହୁତାଶନ ।
ଜୀବନ କାଳରେ ଥିଲା ଅଭିନ୍ନ ହୃଦୟ,
ମହାଧାମେ ଶେଷ ଦିନେ ମିଳିବୁଁ ଉଭୟ ।
ଏହି କଥା ପୋଷି ହୃଦେ ଅଛି ପ୍ରାଣ ଧରି,
ବାହିବେ ସ୍ମୃତିର ଆଶା ବକ୍ଷ ପୁଷ୍ପ ପରି ।



# ତୁମ୍ଭ ପଦେ ସ୍ଥାନ ।



ବିଶ୍ୱନାଥ ପ୍ରାଣନାଥ ଅଛ କେଉଁସ୍ଥାନେ ?
ବିଶ୍ୱବ୍ୟାପ୍ତ ଅଧିଷ୍ଠାନ ଅନୁଭବେଁ ପ୍ରାଣେ ।
ସଲିଳନିମଗ୍ନ ମୀନ ବାଛ ତା ଜୀବନ,
ତୁମ୍ଭ ମହିମାରେ ମଗ୍ନ ମୋ ପ୍ରାଣ ସେପନ ।
ଜଳେ ସ୍ଥଳେ ଶୂନ୍ୟମାର୍ଗେ ଦିଗଦିଗନ୍ତରେ,
ତୁମ୍ଭ ସତ୍ତା ଅନୁଭବ କରେଁ ହୃଦୟରେ ।
ଜୀବର ଜୀବନ ପ୍ରଭୁ ମହାନ ଈଶ୍ୱର,
ଜଡ଼ୀୟ ଇନ୍ଦ୍ରିୟେ ସ୍ୱଭାବରେ ଅଗୋଚର ।
ଆତ୍ମମଧ୍ୟ ଅନୁଭବ କେବଳ ଆତ୍ମାରେ,
ଅଧେୟ ନ ଅଧିଷ୍ଠିତ ଅଯୋଗ୍ୟ ଆଧାରେ ।
ଧ୍ୟାନ ଯୋଗେ କରେଁ ଆତ୍ମପ୍ରାଣେ ଅନୁଭବ,
ଆତ୍ମମଧ୍ୟ ଜ୍ୟୋତିର୍ମୟ ଆହେ ଭବଧବ ।
ଜଡ଼ରୁ ବିଚ୍ଛିନ୍ନ ହେବ ଯଦା ମମ ପ୍ରାଣ,
କୃପା କର, ତୁମ୍ଭ ପଦେ ପାଏଁ ଯେମନ୍ତେ ସ୍ଥାନ ।



# ଚିତ୍ରକର ।



ଅହେ ଚିତ୍ରକର, ଭଲେ ନିରନ୍ତର
ତୁମ୍ଭ ଚିତ୍ରପଟ ଦେଖି,
କେବଣ ତୁଳୀରେ କି ବର୍ଣ୍ଣାବଳୀରେ
ଏ ଚିତ୍ର ରଖିଛ ଲେଖି ।

ଅସୀମ ଅନନ୍ତ ଅନାଦି ଦିଗନ୍ତ
ଚିତ୍ରପଟର ବିସ୍ତାର,
ତହିଁ ତରୁଲତା ଗ୍ରହ ତାରାବଳୀ
ଦୀପ୍ତ ଶଶୀ ଦିବାକର ।

ପଟର ମହିମା ବର୍ଣ୍ଣନା ଅସୀମା
ବିବିଧ ବର୍ଣ୍ଣେ ଚିତ୍ରିତ,
ପୁଣି ସେହି ଚିତ୍ର ଦେଖଇଁ ବିଚିତ୍ର
କ୍ଷଣେ କ୍ଷଣେ ପ୍ରବର୍ତ୍ତିତ ।

ଯାବନ୍ତ ଜୀବନେ ଦେଖିଲି ନୟନେ
ଗଗନମଣ୍ଡଳ ଚାହିଁ,
ପ୍ରତି ମୁହୂର୍ତ୍ତରେ ବିବିଧ ଚିତ୍ରରେ
ଏକ ଅନେ ଐକ୍ୟ ନାହିଁ ।

ନୀଳିମା ସାଗରେ ହରିତ ବର୍ଣ୍ଣରେ
ପୃଥ୍ୱୀମଣ୍ଡଳ ଚିତ୍ରିତ,
ବିବିଧ କୁସୁମେ ପୂର୍ଣ୍ଣ ଲତା ଦ୍ରୁମେ
କୃଷ୍ଣ ନୀଳ ଶ୍ୱେତ ପୀତ ।

ନୀରବ ଭକତା ସମାନେ ବେଷ୍ଟିତା
ଅନନ୍ତ ଚିନ୍ତର ଭ୍ରାନ୍ତି,
ଅନନ୍ତ ମହିମା ନ ପାଇ ତା ସୀମା
ଜୀବନେ ନ ଲଭେ ଶାନ୍ତି ।
ଅହେ ଚନ୍ଦ୍ରଧର ମହାମହେଶ୍ୱର,
କାହିଁ ଅଛ ବିଦ୍ୟମାନ,
ନ ପାଇ ତଦନ୍ତ ହେଉଛି ନିତାନ୍ତ
ଆକୁଳିତ ମନ ପ୍ରାଣ ।

## ଜନ୍ମଭୂମି ।

କାହିଁ ମୋ ଜନମଲଭ କାହିଁ ଲୁପ୍ତ ଦେହ ?
କାହିଁ ମୋର ଲୀଳାସ୍ଥଳୀ ମଧୁମୟ ଗେହ ?
ଜୀବନ ଜୀବିକା କାହିଁ ପୂର୍ଣ୍ଣ ମନସ୍କାମ ?
ପବେଶ ମୋ ଜନ୍ମଭୂମି ସ୍ୱର୍ଗମୟ ଧାମ ।

# ଜଗତ ସୁଖମୟ ।



ମାୟାବାଦୀ ବୈଦାନ୍ତିକେ କହନ୍ତି ପ୍ରଚୁର,
ହେବା ଭବ କାନ୍ତା ପୁଣ ବଚନ ଅପାର ।
ନାସ୍ତିକ ମତରେ କର୍ମ ଜଗତର ମୂଳ,
କର୍ମପୁଞ୍ଜେ ବଦ୍ଧ—କର୍ମେ ବ୍ୟସ୍ତ ନରକୁଳ ।

ମାନବର ଜନ୍ମ ଲଭ ଘୋର ଯନ୍ତ୍ରଣା,
ତହୁଁ ମୁକ୍ତିକାମୀ କରେ କୈବଲ୍ୟ ସାଧନା ।
ଅନନ୍ତ ନରକବାଦୀ ବାଇବେଲ ଶାସ୍ତ୍ର,
ପାପିଷ୍ଠ ଆଦମଠାରୁ ଜନ୍ମ ଲଭ ମାତ୍ର,
ପ୍ରତ୍ୟେକ ମାନବ ପାପୀ—ନ ଭଜିଲେ ଖ୍ରୀଷ୍ଟ—
କୁପିତ ଈଶ୍ୱର ହେବେ ତୁମ୍ଭ ପ୍ରତି ରୁଷ୍ଟ ।

ଧାର୍ମିକ ହବେକ ହେଉ ସଜ୍ଜନ ଲୋକ—
ନ ଭଜିଲେ ଖ୍ରୀଷ୍ଟ, ଭୋଗ ଅନନ୍ତ ନରକ ।
ନୈୟାୟିକ ମତେ ସୁଖ ଜଗତରେ ନାହିଁ,
ଦୁଃଖର ଅଭାବ ସୁଖ ବୋଲ ସେଥିପାଇଁ ।

ଶାସ୍ତ୍ରରେ ପ୍ରକାଶ ଶାକ୍ୟସିଂହ ମହାବାଣୀ—
ଦୁଃଖାର୍ଣ୍ଣବେ ଭ୍ରମମାନ ଜଗତର ପ୍ରାଣୀ ।
ମହାତ୍ମାନେ ପ୍ରକାଶିଲେ କନ୍‌ଫୁସିୟ ମତ—
ଦୁଃଖ ଯାତନାରେ ପୂର୍ଣ୍ଣ ନିଖିଳ ଜଗତ ।

ତେବେ ବୋଲ ଜଗତଟା କଷ୍ଟନିକେତନ ?
ଯନ୍ତ୍ରଣାଜଡ଼ିତ ସବୁ ମାନବ ଜୀବନ ।

ଦୟାମୟ ପ୍ରେମମୟ ଜଗତର ପନ୍ଥ—
ପୂଜିଲେ କି ନର ଭୋଗ୍ୟ କେବଳ ଦୁର୍ଗନ୍ଧ ?

ନାହିଁ ନାହିଁ ଅକୃତଜ୍ଞ ନ ହୁଅ ମାନବ,
ଜଗତରେ ପୂର୍ଣ୍ଣ ଦେଖ ଆନନ୍ଦ ଉତ୍ସବ ।

ଧର୍ମଶାସ୍ତ୍ର ମହାବାକ୍ୟ ଥାଉ ମୋ ମସ୍ତକେ—
ପ୍ରତ୍ୟକ୍ଷରେ ଦେଖୁଁ ସୁଖ ଭୁଞ୍ଜୁଛନ୍ତି ଲୋକେ ।

ଧାର୍ମିକ ବିବେକୀ ଜ୍ଞାନୀ ସୁଖେ କାଟେ କାଳ,
ତାହାଠାରେ ଅଛି ତୁଚ୍ଛ ଜଗତଜଞ୍ଜାଳ ।

ବାଲ୍ୟେ ଜନନୀର ସ୍ନେହ, ଯୌବନେ ସଙ୍ଗିନୀ—
ପ୍ରୀତିସୁଖ ପ୍ରେମଧାରୀ ଭ୍ରାତା ଓ ଭଗିନୀ ।

ପୂଜ୍ୟପାଦ ପିତା ମାତା ଈଶ ପ୍ରତିନିଧି—
ସନ୍ତାନ ସକାଶେ ସ୍ନେହକରୁଣାବାରିଧି ।

ଗୃହ ପରିବାରେ ସୁଖ ପୂର୍ଣ୍ଣ ଜଗତରେ,
ନ ପାର କି ଅନୁଭବି ଅନ୍ତର୍ଜୀବନରେ ?

ଆନନ୍ଦର ଧାରା ବହେ ବାହ୍ୟ ଜଗତରେ—
କୁସୁମେ ସୌରଭ, ଜ୍ୟୋତି ରବି ଶଶାଙ୍କରେ ।

ଏ ସମସ୍ତ ସୁଖ ମୂଳେ ପ୍ରଚ୍ଛନ୍ନ ନିହିତ
ରହିଛି କାହାର କୃପା ଅଛ କି ବିଦିତ ?

ଯେଉଁ ସୁଖ ଯେଉଁ ପ୍ରେମ ସାଗର କଣିକା
ଗ୍ରହଣେ ମାନବ କାଟେ ଜଗତେ ଜୀବିକା—

ପ୍ରେମମୟ ସୁଧାମୟ ସେ ଆନନ୍ଦସିନ୍ଧୁ,
ପାର୍ଥିବ ଜୀବନ ତହୁଁ ଲଭ ମାତ୍ର ବିନ୍ଦୁ,

ଆନନ୍ଦର ଉତ୍ସ ନିତ୍ୟ ଯହୁଁ ପ୍ରବାହିତ,
ଚିନ୍ତ ତାଙ୍କୁ ନ ରହିବ ଯାତନା କିଞ୍ଚିତ ।
ଇହ ପର କାଳେ ସୁଖୀ ସେହୁ ଭାଗ୍ୟବାନ,
ପବିତ୍ର ମନରେ କରେ ବ୍ରହ୍ମପଦ ଧ୍ୟାନ ।

## ନିବେଦନ ।

ଇହ ପର କାଳେ ପ୍ରଭୁ ସହାୟ ସମ୍ବଳ,
ତୁମ୍ଭେ ମୋ ଜୀବନଦାତା ଭରସାର ସ୍ଥଳ ।

କି ଭୟ ? କାହାକୁ ଭୟ ? ଯେବେ ମହେଶ୍ୱର—
ପଦେ ସମର୍ପଣ କରେଁ ଜୀବନ ମୋହର ।

ଦିଅ ଦେହେ ଶକ୍ତି ପ୍ରଭୋ, ଜ୍ଞାନେ ଦିଅ ବଳ ,
ବିପଦ ସମ୍ପଦେ ମନ ନ ହେବ ଚଞ୍ଚଳ ।

ଯେ ଅନ୍ନ ପ୍ରସାଦ ସୁଖ ଭୁଞ୍ଜେ ମୋର ପ୍ରାଣ,
ସାଧୁ କାର୍ଯ୍ୟ ପୁରସ୍କାର ତୁମ୍ଭ ମହାଦାନ ।

ତୁମ୍ଭ ଦତ୍ତ ମନ୍ତ୍ର ଚିତ୍ତେ ଜପିବି ସନ୍ତତେ,
ସୁଖେ ଦୁଃଖେ ଥିବି ସଦା ତୁମ୍ଭର ଆଶ୍ରିତେ ।

ଜଗତ ଅନ୍ତରସ୍ଥାୟୀ ଜୟ ପରାଜୟ,
ସୁଖରେ ଉଲ୍ଲାସ କିଂପା ଦୁଃଖେ କିବା ଭୟ

ସଫଳ ଯଦି ନ କର ତୁମ୍ଭ କାର୍ଯ୍ୟ ସାଧି
ହେଉ ପ୍ରଭୋ ମହାନାଶେ ଜୀବନ ସମାଧି ।

ସାଧୁ କାର୍ଯ୍ୟେ ବର୍ତ୍ତି ମୃତ୍ୟୁ କଲେ ଅହଙ୍କାର,
ଦିଅ ଦଣ୍ଡ, ପ୍ରାଣ ପୋଡ଼ି ହେଉ ଛାରଖାର ।

ଧନ୍ୟ ହେଉ ମୋ ଜୀବନ ତୁମ୍ଭ ନାମ ଧ୍ୟାନେ,
ଧନ୍ୟ ହେଉ ମୋ ରସନା ତୁମ୍ଭ ନାମ ଗାନେ ।

ପର ଉପକାରେ ହେଲେ ଜୀବନ ଦୁର୍ବଳ,
ହେ ଅନନ୍ତଶକ୍ତି ! ଦିଅ ପ୍ରାଣେ ଶକ୍ତି ବଳ ।
ଭୁଲି ତୁମ୍ଭ ନାମ ମତ୍ତ ଯେ ଅସାର ଧନେ,
ନାଅ କାଢ଼ି ଭୁଞ୍ଜେ ଫଳେ ଯାତନା ଜୀବନେ ।
ନ ଶୁଣିବ ଖଳ ରିପୁ ଅବିଦ୍ୟା ମନ୍ତ୍ରଣା,
ନ ଛୁଡ଼ିବ ସାଧୁ ମାର୍ଗ ଏତିକି ପ୍ରାର୍ଥନା ।
ସଂସାରସଂଗ୍ରାମେ ଜୟୀ ହେବ ମହାବଳେ,
ମହାପ୍ରଭୁ ନିବେଦନ ତବ ପଦତଳେ ।

## ଶେଷ ଦିନ ।

ଜାଗର ଭୈରବ-ବେଶ ବାଜେ ନବନ୍ତରେ,
ମାରବ ଆହ୍ୱାନ ଅନୁଭବି ଜୀବନରେ ।
ବସନ୍ତର ଅସ୍ତହୂତ କୋକିଳ କାକଳୀ,
ଶମନର ଅନୁଚର ଲୋମହର୍ଷାବଳୀ ।
ପ୍ରାବୃଟ ପୂରଣାକାଶ ଦର୍ଦ୍ଦୁରନାଦ,
ଜଣାଏ ଧବଳବେଶ ମରଣ ସମ୍ବାଦ ।
ଜ୍ୱଳନ୍ତ ଅନଳ ରକ୍ତ ତପନ-ଜୀବନ
ଶଂଖାର କରତ ପଥ କରୁଛି ଛେଦନ ।
ଠିକ୍‌ଠାକ୍ ଘଣ୍ଟା-ଯନ୍ତ୍ର କହେ ଅନୁକ୍ଷଣେ,
କାଟିବା ଜୀବନକାଳ ଶବ୍ଦ ଦେଇ ମନେ ।
ସର୍ବରୂପ ମୃତ୍ୟୁ ନିମନ୍ତ୍ରଣ ଶୁଣି ଶୁଣି,
କେଉଁ ଭବପାରେ ବସିଅଛ ହୋଇ ତୁନି ।
ଯତନପାଳିତ ଦେହ ଶୃଙ୍ଖଳିବ କାହିଁ,
ଆସ ଭାଇ, ସଙ୍ଗ ହେଉଁ ଶେଷଦିନ ପାଇଁ ।

# ଭାଇ କିଏ ।



ଉତ୍କଳେ ଜନମ ଉତ୍କଳେ ମରଣ,
ଉତ୍କଳ ଅନ୍ନରେ ଜୀବନ ଧାରଣ ।
ସମ୍ପଦେ ଭାବ ଯୋଡ଼ିରୁଁ କପାଇଁ,
ମାତା ସମ୍ପର୍କରେ ସର୍ବେ ଭାଇ ଭାଇ ।
ଭିନ୍ନାଭିନ୍ନ ଭାବ ବ୍ୟବହାର ଜନ—
ମୋ କ୍ଷୁଦ୍ର ବୁଦ୍ଧିରେ ସେ ତ ଅକିଞ୍ଚନ ।
କର ଯୋଡ଼ି ତାଙ୍କୁ ବୋଲୁଅଛି ଭାଇ !
ଏକକୁ ଅନେକ ଦ୍ୱନ୍ଦ୍ୱ ଭୁଲିପାଇ,
ଆସ କରୁଁ ମାତୃ ଦେଶର ଉନ୍ନତି,
ଯେହୁ ଜନ୍ମଭୂମି ଦୁର୍ଦ୍ଦଶା ଦୁର୍ଗତି ।
ଯେତେ ଦିନ ଭାଇ ନ ହେବ ମିଳିତ,
ନ ମେଣ୍ଟିବ ଦେଶ ଦୁର୍ଦ୍ଦଶା କୁତ୍ସିତ ।
ହିନ୍ଦୁ ମୁସଲମାନ ଖ୍ରୀଷ୍ଟାନ ଜଇନ—
କେବଳ ଧର୍ମରେ ହେବା ଭିନ୍ନାଭିନ୍ନ ।
ଧର୍ମ ଜାଣ ଭାଇ ପରକାଳପାଇଁ,
ପୃଥ୍ୱୀର ସନ୍ତାନ ଏହା ଭୁଲ ନାହିଁ ।
ଯା ପୂର୍ବ୍ବପୁରୁଷ ବିଦେଶୀ ନିଶ୍ଚୟ,
ନ ଭୁଲୁ ସେ ଲୋକ ଉତ୍କଳତନୟ ।
ହେଉନ୍ତୁ ବଙ୍ଗାଳୀ ତେଲଙ୍ଗା ମାର୍ୱାଡ଼ି—
ତୁମ୍ଭ ଦେହ ଗଢା ଉତ୍କଳର ମାଟି ।

ଦୁଇ ଧନ ପାଇଁ ନାହିଁ ତ ଏ ଦେଶେ,
ବଂଶ ଅନୁକ୍ରମେ ରହିବ ବିଶେଷେ ।
ଦୁର୍ଭିକ୍ଷ ଦୁର୍ଦ୍ଦଶା ପଡ଼ିଲେ ଉତ୍କଳେ,
ମିଳିମିଶି ଭାଇ ଭଣ୍ଡିରୁଁ ସଞ୍ଚଲେ ।
ଭାଇ ଭାଇ ମଧ୍ୟେ ନ ଲଗାଅ କଳି,
ପରଚସ୍ତୁ ଦିଅ ନିଜକୁ ଜଳ୍ଳୀ ।
ପାକପନ ଜର୍ମନ ଗ୍ରୀକ ଓଲନ୍ଦାଜ,
ଇଂଲଣ୍ଡର ବାସୀ ସମସ୍ତେ ଇଂରଜ ।
ଉତ୍କଳେ ଜନମି ବୋଲ ଅନ୍ୟ ଜାତି,
ବାମବଡ଼ା ଏଠା ନିଷ୍ଠୁର ଇତ୍ୟାଦି ।
ହିଂସା ଦ୍ୱେଷ ବଢ଼ୁ ଦ୍ୱନ୍ଦ ପରସ୍ପର
କଲେ ନିଶ୍ଚେ ହେବ ଦୁର୍ଦ୍ଦଶା ତୁମ୍ଭର ।
ହେଉ ପଛେ ତୁମ୍ଭେ ଥିଲ ବଡ଼ ଜାତି,
ଏବେ ତ ଉତ୍କଳ ଦେଶ ପୁଅ ନାତି ।
ଜନ୍ମଭୂମି ଆଉ ଜନନୀ ଏମାନେ
ଶାସ୍ତ୍ରରେ କଥିତ ସ୍ୱରଗ ସମାନେ ।
ଯେ ବୋଲେ ନିଜକୁ ବିଦେଶୀୟ ଲୋକ—
ନିଶ୍ଚେ ସେହୁ ଜନ୍ମଭୂମିର ନିନ୍ଦକ ।
ଆସ ଭାଇମାନେ କରୁଛୁ ଜୁହାର,
ମିଳିମିଶି କରୁଁ ଦେଶ ଉପକାର ।



# କପୋତ ଦମ୍ପତି ।



ନିକୁଞ୍ଜ କାନନେ          ଏକ ପ୍ରାଣ ମନେ
ବେନି କପୋତ କପୋତୀ,
କରୁଥିଲେ ବାସ          ମନରେ ଉଲ୍ଲାସ
କ୍ଷୁଦ୍ର ବିହଗଦମ୍ପତି ।
କାଳ ଅହି ବଧି          କପୋତକୁ ବ୍ୟାଧ
କପୋତ ଶବର ଭୁକ୍ତ,
ଅତୁଳ ଜୀବନେ          କରେ ଅନୁକ୍ଷଣେ
ମନୋଦୁଃଖେ ଉକ୍ତ ଉକ୍ତ ।



# ମହାଧାମରେ ମିଳନ ।



ପ୍ରଥମ ଯୌବନେ          କାଳେ ବେନି ଜନେ
ଥିଲେଁ ଦୂର ଦୂରାନ୍ତରେ ।
ନିଭୃତ ନିଭୃତେ          ଚିନ୍ତି ପ୍ରିୟତମେ
ଅମଳିନ ପରଷ୍ଟରେ ।
ଯାହା ସୁଖେ ଦୁଃଖେ          ଏକକୁ ଅପରେକେ
ସମୟସ୍ରୋତରେ ଭାସି
ଯାଉଥିଲେଁ ରଙ୍ଗେ          ପ୍ରଣୟ ପ୍ରସଙ୍ଗେ
କେବେ ବା ହୋଇ ଉଦାସୀ ।
ଅନ୍ତ ଭବିଷ୍ୟତ          ମାନବ ସମସ୍ତ
ଜାଣି ପାର କଥା କୁତ—

ଥାଏ ଅଚେତନେ     ମାୟା ଟମୋହତନେ
ସଂସାରସାଗରେ ବୁଡ଼ି ।
ଥିଲ ନାହିଁ ଭବ     ଜୀବନର ଭବୀ
ସମସ୍ୟ ସ୍ୱତନ୍ତ୍ର ଦଶା,
ସମସ୍ତ ଜୀବନ     ସମାନେ ଯାପନ
କରିବ ମନେ ଭରସା ।
ବଧିର ବିଧାନ     କେ କରିବ ଆନ
ସଂଯୋଗ ବିଯୋଗ ବେଳ—
ଅଚେତ ଚେତନେ     ଏ ବିଶ୍ୱଭୁବନେ
ଚଳନ୍ତି ନିୟମ ଯେନ ।
ହେଲୁଁ ସ୍ୱତନ୍ତ୍ର     ଉଭେ ପରସ୍ପର
ଲୋକାନ୍ତର ବ୍ୟବଧାନ,
ଜୀବନ ପ୍ରାନ୍ତରେ     ସେ ତ ନିଶ୍ଚିନ୍ତରେ
ମୁଁ ସଂସାରେ ବିଦ୍ୟମାନ ।
ଶୂନ୍ୟ ଶୂନ୍ୟ ମନେ     ଉଦାସ ଜୀବନେ
ଯାପେଁ ଜୀବନ ସମସ୍ତ,
କରିବି ଛେଦନ     ଜଗତ ବନ୍ଧନ
ତାହା ସ୍ଥାନ ନିରାମୟ ।
ଜଗତ ଜଞ୍ଜାଳେ     ବ୍ୟାଧିର କବଳେ
କଷ୍ଟ ଅନୁଭବେଁ ପ୍ରାଣେ,
ପାର୍ଥିବ ଯନ୍ତ୍ରଣା     ଥିବ ନାହିଁ ଜଣା
ତାହାଙ୍କୁ ଏ କଥା ଜାଣେ ।
ଅଲକ୍ଷ୍ୟ ଦୃଶ୍ୟରେ     ଅଚିନ୍ତ୍ୟ ଭବରେ
ମନ କରେ ସମର୍ପଣ,

ଜଣାଏ ସୂଚନା ଭବିଷ୍ୟ ଘଟଣା
ଅମ୍ଭଃ-ଆତ୍ମା ସଂଘଟନ ।
ଇହ ପରକାଳେ ମଧ୍ୟ ଚକ୍ରବାଳେ
ଉର୍ଦ୍ଧେ କରିବ ଗମନ,
ପୋଷିତ୍ରୁ ପ୍ରତ୍ୟୟ ଘଟିବ ନିଶ୍ଚୟ
ମହାଧାମରେ ମିଳନ ।



## ବାଟବଣା ।



ଆଉ କାଳ କେତେ ଭ୍ରମିବ ଜଗତେ
ଚରଣ ଅବଶ ମୋର,
ଇନ୍ଦ୍ରିୟ ବିକଳ ଶରୀର ଅଚଳ
ଚିନ୍ତାଜରେ ଜରଜର ।
କେତେ ଦିନାନ୍ତରେ ସେ ଲକ୍ଷ୍ୟ ସ୍ଥାନରେ
ପ୍ରବେଶିବି ନାହିଁ ଜଣା ।
ଏତିକି ଜନାଇ ଅହେ ପ୍ରାଣପତି
ହେବ ନାହିଁ ବାଟବଣା ।



# ଭାବନା ।

ସଂସାର ଅବାସେ ଅନନ୍ଦ ଉଲ୍ଲାସେ
ଭୁଲି ଅଛେଁ ପ୍ରାଣେଶ୍ୱର !
ମନ ଉନ୍ମତ୍ତରେ ଅଳୀକ ସୁଖରେ
ଲିପ୍ତ ଥିଲି ନିରନ୍ତର ।
ଇନ୍ଦ୍ରିୟ ଲାଳସା ଜୀବନର ଆଶା
କରିବାପାଇଁ ସଫଳ—
ଭୁଲି ପରିଣାମେ ସଂସାରସଂଗ୍ରାମେ
ପାନ କଲି ହଳାହଳ ।
ନ ଥିଲା ଚେତନା ନ ହେଲା ଭାବନା
ଶେଷ ଦିନପାଇଁ ପ୍ରଭୁ !
ଦୃପ୍ତ ଅନ୍ତରରେ ପ୍ରଫୁଲ୍ଲ ମନରେ
କରିଅଛି ଯେ କାର୍ଯ୍ୟ ସବୁ ।
ଭାଳି ଶେଷ ଦିନ ହେଲି ନାହିଁ ଖିନ୍ନ
ଜୀବନେ ଅସାର ଆଶା,
ନ ହେଲା ଚେତନା ଗଲେ ମଧ୍ୟ ଜଣା
ବିବେକ ଅନୁକ୍ତ ଭାଷା ।
ଅପରୂପ ବେଶ ଶିରେ ଶୁକ୍ଳ କେଶ
ବଳହୀନ ହସ୍ତ ପଦ ।
ବ୍ୟାଧିରେ ଜର୍ଜର କ୍ଷୀଣ କଳେବର
ଲୋଡ଼େ ପାର୍ଥିବ ସମ୍ପଦ ।
ଚିନ୍ତା ଅନୁଦିନ ହେଲି ନାହିଁ ଖିନ୍ନ
ଜଗତର ଆକର୍ଷଣ,

ଅସ୍ପୃହାରଣା		ଗଲ୍ପ ନାହିଁ ଜଣା
ଶେଷ ଧନ ନିମନ୍ତ୍ରଣ ।
ଯୋଡ଼ୁଅଛୁ କର		ଅହେ ପ୍ରାଣେଶ୍ୱର !
ଶୁଣ ମରମବେଦନା,
ଛୁଟାଉ ଜୀବନ		ମରୁ ମରୀଚିକା
ଅଳୀକ ଭବ ଭାବନା ।



## ସଙ୍ଗୀତ ।



ବେଦନା ଜଡ଼ିତ		ହୃଦୟେ ଉଦିତ
ଚେତନା ଉତ୍ଫୁଲେ ଘନେ ।
ଆଶାର ପିପାସା		ବାଜରେ ଲାଳସା
କୁଅଁସା ସମାନ ମନେ ।
ତାହାର ଉଦ୍ଦେଶେ		ଅଜଣା ପ୍ରଦେଶେ
କଳ୍ପନାଲୋକରେ ରହି
କରନ୍ତେ ବିଶ୍ୱାସ		(ମନର ଉଚ୍ଛ୍ୱାସ
କଷ୍ଟ—) ସଙ୍ଗୀତ ପାଇଁ ।



# ଯୌବନଜୀବନ ।



ଭସିଗଲା କାଳସ୍ରୋତେ ପୁରାତନ ପ୍ରାଣ,
ଯୌବନର କାର୍ଯ୍ୟ ଶେଷ ଯଜ୍ଞାଗ୍ନି ନିର୍ବାଣ ।
ମହୋଦ୍ୟୋଗେ କାର୍ଯ୍ୟକ୍ଷେତ୍ରେ ଅସୀମ ସାହସେ
ଭ୍ରମିଛୁ ଭ୍ରମରେ କେତେ ଦେଶେ କାର୍ଯ୍ୟବଶେ ।
ଉଲ୍ଲାସ ଆନନ୍ଦପୂର୍ଣ୍ଣ ପ୍ରାଣେ ଶରୀରରେ,
ସୁଖ ଯଶ ଧନ ମାନ ଲାଳସା ମନରେ ।
ଭବିଷ୍ୟତ ଭବିତବ୍ୟ ଥିଲା ନାହିଁ ଜ୍ଞାନ,
ଚଞ୍ଚଳ ଯୌବନ ଦିନେ ହେବ ଅବସାନ ।
ଅବିଶ୍ୱାସ ଅଭିମାନ ଥିଲା ନାହିଁ ମନେ,
ଜୀବନର ସଙ୍ଗୀ ମଣୁଥିଲି ବନ୍ଧୁଗଣେ ।
କୁଟିଳତା-ପଙ୍କ-ଲିପ୍ତ ନ ଥିଲା ହୃଦୟେ,
ବନ୍ଧୁଗଣ ସଙ୍ଗେ ପ୍ରେମ ପ୍ରୀତି ବିନିମୟେ ।
ସମାଜ ମଙ୍ଗଳ କାର୍ଯ୍ୟେ ହୋଇ ଅନୁରାଗୀ
ନ ବୁଝି ବିଷୟ ହୋଇଥିଲି ସ୍ୱାର୍ଥତ୍ୟାଗୀ ।
ପଶ୍ଚାନ୍ତରେ ଲଭିଅଛୁ. ବହୁତ ଦୁର୍ଦ୍ଦଶା,
ଚରିତାର୍ଥ କରିବାକୁ ଇନ୍ଦ୍ରିୟ ଲାଳସା ।
ସୁଖେ ଦୁଃଖେ ଧର୍ମାଧର୍ମେ କଲେକ ବିଚାର,
ଯୌବନ ସମସ୍ତ ଅଟେ ଜୀବନର ସାର ।



# ବାକ୍ୟ ସଂଯମ ।



ବାକ୍ୟ ଉଚ୍ଚାରଣ କର ମାନବ ପ୍ରଧାନ,
ଲଭୁଛ ତା ଯୋଗେ ପ୍ରାଣିବର୍ଗେ ଶ୍ରେଷ୍ଠସ୍ଥାନ ।
ସାବଧାନେ କର ସେହୁ ବାକ୍ୟ ଉଚ୍ଚାରଣ,
ଅନ୍ୟଥା ମାନବ ଜନ୍ମ ହେବ ଅକାରଣ ।

ପ୍ରଭୁଦତ୍ତ ମହାକୃପା ଜୀବନର ସାର,
କର ନାହିଁ ତାହା କେବେ ଅପବ୍ୟବହାର ।
ମାନବର ଜ୍ଞାନ-ଶ୍ରେଣି ବାକ୍ୟ ଶୃଙ୍ଖଳରେ
ଅବଦ୍ଧ—ସମାଜେ ଶିକ୍ଷା ଦଏ ପରସ୍ପରେ ।

ଯେଉଁ ବାକ୍ୟଗୋଟି ଥରେ ମୁଖରୁ ବାହାର,
ସାଧ୍ୟ କି ତାହାକୁ କର ପାର ପ୍ରତ୍ୟାହାର ।
ଚନ୍ଦ୍ରକୋଷ୍ଠୁ ଉଷ୍ଣ ବେଳେ ହେଲେ ବହିର୍ଗତ,
ପାଇବ କେ କହ ପୁଣି ତାହା ମଧ୍ୟଗତ ।

ଉଚ୍ଚାରିତ ବାକ୍ୟ ତଥା ପବନମଣ୍ଡଳେ
ମିଶିଯାଏ, ନ ଫେରିବ ବଳେ ବା କୌଶଳେ ।
ବାକ୍ୟଗୁଣେ ଲୋକ ହୋଇ ପାରେ ଦଣ୍ଡଧାରୀ,
ବାକ୍ୟଦୋଷେ ଥରେ ପୁଣି ମାର୍ଗରେ ଭିକାରୀ ।

ବାକ୍ୟ ଉଚ୍ଚାରଣ ଯନ୍ତ୍ର କୋମଳ ରସନା,
କଠିଣ ବଚନ ତହିଁ ସ୍ପର୍ଶ କର ନା ।
ନିଷ୍ଠୁର ବଚନ କେତେ ଯନ୍ତ୍ରଣାଦାୟକ,
ଜୀବନେ ବହୁଛ ତାହା ଅନୁଭବୀ ଲୋକ ।

ବିପଦେ ବା ରୋଗେ ଯେବା ଭୋଗୁଛି ଯାତନା,
ମିଷ୍ଟ ବାକ୍ୟ ଦେଇ ପାର ତାହାକୁ ସାନ୍ତ୍ୱନା ।
ସହଜ ମାନବ ପ୍ରାଣେ ବାକ୍ୟ-ବିଷ ଢାଳ
ସୁଖ ଶାନ୍ତି ପ୍ରୀତି ନାଶି ଦେଇ ପାର ଜାଳ ।
ଉଦୟ ଯେତେକ ଭାବ ହୋଇଥାଏ ମନେ,
କ୍ଷିପ୍ର ଲୋକ ତତକ୍ଷଣେ ପ୍ରକାଶେ ବଚନେ ।
ବାକ୍ୟ ବୋଲିବାର ପୂର୍ବେ କରିବ ବିଚାର,
ଅନ୍ତ କ ନା ଇଷ୍ଟାନିଷ୍ଟ ଏଥିରେ କାହାର ।
ଯେଉଁ ଲୋକ କରି ପାରେ ବଚନ ସଂଯମ,
ଜଗତରେ ପରିଚିତ ସେହି ବିଜ୍ଞତମ ।



## ପ୍ରଜାପତି ।

ପ୍ରଭାତେ ଅରୁଣ କିରଣ
ଅବନୀରେ ବିକାଶେ ।
ସୁଧୀର ସମୀରପ୍ରବାହେ
ପ୍ରଜାପତି ଉଲ୍ଲାସେ
କାହୁଁ ଅଧି ଭସି କୁସୁମ
ପାଶେ ମିଳେ ସେକାଳେ,
ଅର୍ଚ୍ଚନା କାମନା ପୂଜକ
ଦେବାଳୟେ ସକାଳେ ।
କେତେ ରଙ୍ଗେ ଉଡ଼ି ବୁଲେ ସେ
ବନ୍ଧ ସରଜ ଗଣ;

ସନ୍ଧ୍ୟା ଧୂପ ଯେନ ପୂଜକ
ଯଥା କରେ ଅରଣ ।
ଉଡ଼ି ଉଡ଼ି ପୁଷ୍ପ କର୍ଣ୍ଣରେ
କହେ ଗୁପତ କଥା,
ଏପାଇଁ ସୁମନ ସହିତ
ତାର ଏତେ ମିଶତା ?
ନିର୍ମଳ ସୁଢଳ ମଧୁର
ସୁବାସିତ ସୁମନ,
ତୁହ ତ ସୁନ୍ଦର ସରଳ
ଯୋଗ୍ୟ ଯୋଗ୍ୟେ ମିଳନ ।
ଦେଖିଛୁ ଆକାଶେ ପତଙ୍ଗ !
ଉଦେ ବାସବ ଧନୁ—
ତୁଳନା ତା ସଙ୍ଗେ ଦେବାକୁ
ତୋର ଚିତ୍ରିତ ତନୁ ।
ଦେଖି ତୋ ଲବଣ୍ୟ ମୂରତି
ଚିତ୍ତ ମୋହିତ ମୋର,
ତୋତେ ଯେ କଲେ ରେ ନିର୍ମାଣ
ସେ ଯେ କେଡ଼େ ସୁନ୍ଦର ।



# ସ୍ୱଭାବର ନବଭାବ ।



ବସନ୍ତ କାନନ ବିକାଶ ସୁମନ
ବାସ୍ତାରେ ଅପୂର୍ବ ଗନ୍ଧ,
ନିଦାଘ ପ୍ରଦୋଷେ ସମୀର ବିଳାସେ
ଶାଖିଶାଖା ନୃତ୍ୟଚ୍ଛନ୍ଦ ।

ଶାରଦ ଗଗନ ଚିତ୍ତବିମୋହନ
ଚର୍ଚ୍ଚିତ ବିବିଧ ବର୍ଣ୍ଣେ,
ବନର ଗୌରବ ଆପେ କେକାରବ
ଲହରୀ ନିପାତ କର୍ଣ୍ଣେ ।

କୋକିଳ କାକଳୀ ବ୍ୟାପ୍ତ ବନସ୍ଥଳୀ
ଦିଏ କର୍ଣ୍ଣେ ସୁଧା ଢାଳ,
ପ୍ରଫୁଲ୍ଲ ପୁଷ୍ପରେ ଗୁଣୁଗୁଣୁ ସ୍ୱରେ
ଭ୍ରମନ୍ତି ବନେ ଭୃଙ୍ଗାଳି ।

ନୀଳିମା ଆକାଶେ ଚନ୍ଦ୍ରମା ବିକାଶେ
ଜ୍ୟୋତ୍ସ୍ନା ସ୍ନାତ ରଜନୀରେ
ଦିଶେ ଝଙ୍କ ଝଙ୍କ ରଜତ ଆଲୋକ
କାନ୍ତ ପ୍ରତିବିମ୍ବ ନୀରେ ।

ହିରଣ୍ୟ କିରଣ ବିସ୍ତାର ଅରୁଣ
ଊଷା ଭୂଷା କାନ୍ତ କାନ୍ତ
କାନନେ ବିଜନେ କୁସୁମିତ ବନେ
ପ୍ରକାଶେ ସେ ସ୍ନିଗ୍ଧ ଶାନ୍ତ ।

ନୀରଦ ଗଗନେ ଗୁରୁ ଗରଜନେ
ଚଞ୍ଚଳ ଚପଳା ହାସ୍ୟ
ବାର ବରଷଣ ପୀୟୂଷ ଘରଣ
ଜଗତରେ ଲୌକାଲସ୍ୟ ।
ଦହର ଟେପଜବ ପାଦପ ପଲ୍ଲବ
ବିସ୍ତାର ଜଗତବ୍ୟାପୀ
ଇନ୍ଦ୍ରଧନୁ ଘଟନ ଚାକ ସପ୍ତବର୍ଣ୍ଣେ
ତୁଳୀରେ ଦେଇଛ ଥାପି ।
ଯାବତ ଜୀବନେ ଦେଖିଲ ନୟନେ
ତଥାପି ଅପୂର୍ଣ୍ଣ ଆଶା,
ନିତ୍ୟ ନବ ନବ ପ୍ରକୃତିଗୌରବ
ନିତ୍ୟ ନବ ଛନ୍ଦ ଭାଷା ।

## ବିଧବାର ଅଭିଶାପ ।

ଦାରୁଣ ନିଦାଘକାଳ ଦିବାର୍ଦ୍ଧ ସମୟ,
ପ୍ରଚଣ୍ଡ ପବନ ବହେ ତପ୍ତ ଅଗ୍ନିମୟ ।
କେହୁ ପଙ୍ଖାଟିଏ ଧରୁ—ଗାମୁଛା ଭିଜାଇ
ଅଙ୍ଗନରେ ଶୋଇଛନ୍ତି ତରୁଣୀ ବଘଇ ।
ବୁଢ଼ିଟି ମଧ୍ୟ ଶୋଇଅଛନ୍ତି ଘର କୋଣେ,
ଦେଉଛନ୍ତି ଏଘରେ ଛନ୍ନପଟ ମାଜି ଜଣେ ।
ଢେଙ୍କିଶାଳେ ଅବା ବାଡ଼ି ଦୁଆରେ ଆଉଜି
ଅଗଣା ପିଣ୍ଡାରେ ଏକାକିନୀ ଅଛି ବୁଢ଼ି ।

ଫେନ୍ତ କାନ୍ଥା ପାର ପଡ଼ୁଛି ମାଟିରେ,
ଶୁଖିଲାଣି ଓଠ ଧୂଳି ଉଡ଼ୁଛି ପାଟିରେ ।
ମଳିନ ବସନ ମୋଷ୍ଠ ଅଣ୍ଟା ପାଲି ପଚ
ଛଡ଼ିଛି ଦେହରେ ଲଜ୍ଜା ସରମ ଅବୋଧ ।
ଟେକି ହଳଦବେ ଆଉ ନାହିଁ ଅଧିକାର,
ଦେହଯାକ କାଟି ଦେଉଅଛି ଶଣ୍ଢଗାର ।

ଶୁଖିଲା ନୁଖିଲା କେଶ ମସ୍ତକରେ ଭର
ଫର ଫର ଉଡ଼େ କେତେଦିଅଁ ଝୋଟ ପର ।
ବିଧାତା ଗଢ଼ିଲେ ଯାକୁ ଲାବଣ୍ୟ ମୂରତି,
ଘଟାଇଲା କେ ଦୁର୍ମତି ଏମନ୍ତ ଦୁର୍ଗତି !
ଏଗାର ବରଷ କାଳୁଁ ହେଲାଣି ବିଧବା,
ଯାଚି ଦୁଖ ପଡ଼ିଥାଏ କି କରିବ ଅବା !

ଅଲକ୍ଷଣୀ ବହୂ— ଶାଶୁ ଶଶୁର ବାହୁର
ଦେଲେ ଠେଲି, ବାପଘରେ ପଡ଼ିଛି ବିରସ ।
ଯୋଡ଼ାଏ ଭାଉଜ ଘରେ ଅଳପବୟସୀ
କାଟନ୍ତି ଆନନ୍ଦମନେ କାଳ ହସି ହସି ।
ବିଧବାଟି ଲାଗିଥାଏ କାମ ପାଇଟିରେ,
ବାଉଳି ସମାନେ ନାହିଁ କଥାଟି ପାଟିରେ ।
ଅଳପ ଏ ତ୍ରୁଟିରେ ସହେ ବିଷମ ଗଞ୍ଜଣା,
ପୋଇଲୀ କରନ୍ତି ମଧ୍ୟ ଗୃହଦ୍ୱାରକୁ ମନା ।
ଦୁଃଖ ବୋଲିବାକୁ ତାର କେହୁ ନାହିଁ ଦାଦା,
କେବଳ ମାଆଟା ବେଳେ ବେଳେ କରେ ଅଦ୍ଧା ।
କେହୁ ଯଦି ତାକୁ ଗାଳି ଦିଏ ଅଶୁଭାଣୀ,
ମାଅଟା ଆଖିରୁ ଗଡ଼େ ଦୁଇ ଟୋପା ପାଣି ।

ଛି କହିବ ପୁଅ ବନ୍ଧୁ ଅଜ୍ଞ ସ୍ୱାମୀ ଡରେ
ପାଟି ମୁଦ୍ରି ଝିଅ ଅଙ୍କେ ନ ଅନାଏ ଥରେ ।

* * * *

ଆଜି ଏକାଦଶୀ ତିଥି ତା'ପୁଣି ନିର୍ଜଳା,
ସବୁ କଷ୍ଟ ସହୁ ସହୁ ଦେଉଛି ଅବଳା,
ଶୁଖିଛି ହୃଦୟ କାନ୍ଦ କାନ୍ଦ ବନ୍ଧୁ ଜନ,
ଏତେ କଷ୍ଟେ ଦେଡ଼ ମଧ୍ୟ ନେଉ ଅଶ୍ରୁ ସ୍ନାନ ।
କାନରେ ପଡ଼ାଏ ଉଷ୍ମ ପବନ ନିଶ୍ୱାସ,
ଅଭିଶାପ ବୋଲି ମୁହିଁ କରୁଛି ବିଶ୍ୱାସ ।
ବାଳିକା ନ ଜାଣେ ତାହା ଦୁର୍ଦ୍ଦଶା କାରଣ,
କରୁଛି ବିଶ୍ୱାସ ଏହା ବିଧାତାଲେଖନ ।
( ହିନ୍ଦୁର ଲଳନା କେତେ ଦୁଃଖ ସହୁ ପାରେ,
ବିଦେଶୀୟ ଲୋକେ ଆସି ଦେଖି ଯାନ୍ତୁ ବାରେ । )
ତାହାର ଯେ ଘୋର ଶତ୍ରୁ ପୂରଛନ୍ତି ଦେଶେ,
କିପରି ଜାଣିବ ଶିକ୍ଷାବିହୀନା ବିଶେଷେ ।
ନ ଜାଣୁ ତା' ପ୍ରତି ଯେତେ କଲ ଅତ୍ୟାଚାର,
ଧର୍ମ ଦରବାରେ ହେବ ସେଥିର ବିଚାର ।
ବାଳିକା କାହାକୁ ଦିନେ ଦେଇ ନାହିଁ ଶାପ,
ମାନଙ୍କ ମେଣ୍ଟନ ହେବ ନାହିଁ ମହାଶାପ ।
ନାୟକଙ୍ଗା ଜ୍ଞାନଗଣ ବ୍ରାହ୍ମଣ ଗୋସାଇଁ,
ନିର୍ଦ୍ଦୋଷୀ ବାଳିକା ଦଶା ବେଳେ ଦେଖ ଚାହିଁ ।
ସମାଜର ଶୀର୍ଷ ସ୍ଥାନ ଦଳପତିଗଣ,
ଅକ୍ଷି ମେଲି ବାଳିକାକୁ କର ନିରୀକ୍ଷଣ ।
ପ୍ରତିଷ୍ଠା ବିଭ୍ର ହୋଇ ପାରେ ସାତ ବାର,

ଅବଳା ବେଳକୁ ଯେତେ ଶାସ୍ତ୍ରର ଶାସ୍ତ୍ର ।
ସନାତନ ବେଦ ବାଣୀ ଶୁଣିଛ କି କାନେ ? *
ମହାଜ୍ଞାନୀ ବୋଲି ଝଲପଡ଼ ଅଭିମାନେ ।
ମହର୍ଷିଏ ଯାହା କରିଅଛନ୍ତି ବିଧାନ, †
ତାହା ତ ଶୁଣିଲ ନାହିଁ ବେଳେ ଦେଇ କାନ ।
ସମାଜର ସୁଖ ଶାନ୍ତି ଶାସ୍ତ୍ରର ଉଦ୍ଦେଶ୍ୟ,
ଦେଇ କଷ୍ଟ ଲୋକେ ଦିଏ ନାହିଁ ଉପଦେଶ ।
ବାଳ ବିଧବାକୁ ପୋଡ଼ି ଯେଉଁ ଶାସ୍ତ୍ର ବୋଲେ,
ପୋଡ଼ି ଜାଳ ଭସ୍ମ ଢାଳ କର୍ମନାଶା ଜଳେ ।
ପାଷାଣହୃଦୟ ଜାତି ଧିକ ଧିକ ଧିକ,
ଭଣ୍ଡ ଅହଙ୍କାରୀ ଜ୍ଞାନହୀନ ତଚ୍ଛୋଧିକ ।
ଭ୍ରୂଣହତ୍ୟା ପାପପଙ୍କ ଅତ୍ୟାଗ୍ରହ ତାଳ,
କେତେ ନିଷ୍କଳଙ୍କ କୁଳେ ଲଗଉଛ କାଳୀ ।
କେତେ ବାଳକାର ନାଶି ଇହ ପର କାଳ,
ବଢ଼ାଉଛ ଧନ୍ଦ ଜଗତେ ଜଞ୍ଜାଳ ।

---

* କୁହସ୍ୱି ଦୋଷା କୁହ ବସ୍ତୋ ରଶ୍ୱିନା କୁହାଭିପିତ୍ୱଂ କରତଃ କୁହୋଷତୁଃ ।
କୋବାଂ ଶୟୁତ୍ରା ବିଧବେବ ଦେବରଂ ମର୍ଯ୍ୟଂ ନ ଯୋଷା କୃଣୁତେ ସଧସ୍ଥ ଆ ।
ଋକ୍‌ବେଦ ୧୦ମ ମଣ୍ଡଳ—୪୦ ସୂକ୍ତ ।

ଦେବରଃ କସ୍ମାତ୍ ଦ୍ୱିତୀୟୋ ବର ଉଚ୍ୟତେ । ନିରୁ° ଅ° ୩ । ଖଣ୍ଡ ୧୫ ।

† ସା ଚେଦକ୍ଷତଯୋନିଃ ସ୍ୟାତ୍ ଗତପ୍ରତ୍ୟାଗତାପି ବା ପୌନର୍ଭବେନ ଭର୍ତ୍ରା ସା ପୁନଃ ସଂସ୍କାରମର୍ହତି । ମନୁ ୯ମ । ୧୭୮ ।

ନଷ୍ଟେ ଗତେ ପ୍ରବ୍ରଜିତେ କ୍ଲୀବେ ବା ପତିତେ ପତୌ ।
ଏତଦଶାସ୍ୱାଂ ନାରୀଣାଂ ପତିରନ୍ୟୋ ବିଧୀୟତେ । ପରାଶର ।

ଏ ହୃଦ ଜାତର ଯେବେ ନ ହେବ ପତନ,
ଜାଣିବ ଜଗତେ ଧର୍ମ ଅସ୍ତ୍ର ଅଚାରଣ ।

✽ ✽ ✽ ✽

ସତ୍ତକେ ଯେ ସଖ ବ୍ରହ୍ମଚାରିଣୀ ବିଧବା,
ରୁଗ୍ଣ ମୂର୍ଦ୍ଧ ସେମାନଙ୍କୁ କି ବୋଲିବ ଅବା ।
ଧର୍ମମାର୍ଗେ କାଟେ କାଳ ସେବା କରି ଲୋକେ,
ସେମାନଙ୍କ ପଦଧୂଳି ପଡୁ ମୋ ମସ୍ତକେ ।
ତାହାର ତ ହୁଇ ବନ୍ଧୁ ଜଗତ ସଂସାର,
ଅପଣେ ଉଦ୍ଧବ ଲୁଳ କରିବ ଉଦ୍ଧାର ।
ମାଙ୍କ କେତେ ଜଣ ନାରୀ ଅଛନ୍ତି ଧରାରେ,
ପ୍ରକୃତ ପ୍ରବୃତ୍ତି ବୃତ୍ତି ଲକ୍ଷଣ ରଖି ପାରେ,
ମହା ମହା ମୁନି ଋଷି ଯାଇଛନ୍ତି ଟଳି,
ଅଶିକ୍ଷିତା ବାଳିକା କି ଯିବ ତାଙ୍କୁ ବଳି ?
ଅସହ୍ୟ ହେବାରୁ ଗାଇ ଗଲି କେତେ କଥା,
କହିବାର ନାହିଁ ମୋର କିଛିହିଁ ଯୋଗ୍ୟତା ।
ଜ୍ଞାନହୀନ ଧନହୀନ ଦେହେ ନାହିଁ ବଳ,
ବୃଥାରେ କରନ୍ତୁ ଦିନା କ୍ରନ୍ଦନ ସମ୍ବଳ ।
ଦେହେ ଥିଲେ ବଳ ଦ୍ୱାରେ ଦ୍ୱାରେ କରି ଭିକ୍ଷା,
ହାତ ଯୋଡ଼ି ସମାଜକୁ ଦେଉଥାନ୍ତି ଶିକ୍ଷା ।
ଶିକ୍ଷିତ ଯୁବକଗଣ ଦେଶର ଭରସା,
ଆଶା ମୋର, ଘେଞ୍ଚାଇବେ ବିଧବା-ଦୁର୍ଦ୍ଦଶା ।



# ଶାନ୍ତିକାନନ ।



ରେ ଶାନ୍ତିକାନନ ମୋର ଜୀବନ ସମ୍ବଳ,
ନେତ୍ର ତୃପ୍ତ ପ୍ରାଣାରାମ ବିଶ୍ରାମର ସ୍ଥଳ ।
ନନ୍ଦନ କାନନ ସ୍ୱର୍ଗେ ଶୁଣିଛୁ ପୁରାଣେ,
ତୋହର ମହିମା ମର୍ତ୍ତ୍ୟେ ଅନୁଭବେ ପ୍ରାଣେ ।
ମୋ ବିଶ୍ୱାସ, ରେ କାନନ ! ତୁହି ପୂତ ସ୍ଥାନ,
ଜାଗ୍ରତ କରଇ ଭାବ ମହୋଚ୍ଚ ମହାନ ।
ପ୍ରତ୍ୟୁଷ ପ୍ରଦୋଷେ କଲେ ଭ୍ରମଣ କାନନେ,
କି ଅପୂର୍ବ ଶାନ୍ତିରସ ଉପଜାଇ ମନେ ।
ପୁଷ୍କରିଣୀ କୂଳେ ବସି କଲେ ଉପାସନା,
ଆକୁଳ ହୃଦୟେ ଜାତ ଅପୂର୍ବ ସାନ୍ତ୍ୱନା ।
ଜାତିତ୍ୟକ୍ତ ଘୃଣିତ ଯେ ଜନ ସମାଜରେ,
ତୁହି ତ ସାନ୍ତ୍ୱନା-ଦାତା ସେ ଲୋକ ପ୍ରାଣରେ ।
ବିଶ୍ୱଶିଳ୍ପୀ-ଦେବଲୀଳା ସମବେତ ସ୍ଥଳ,
ବିବିଧ ଚିତ୍ରିତ ଲତା ପତ୍ର ପୁଷ୍ପ ଫଳ ।
ଦେଖସେ ବିବିଧବର୍ଣ୍ଣ—ଶୁକ୍ଳ ରଜନୀରେ,
କୁସୁମ ବିକାଶେ କିବା କୌଶଳ ଏଥିରେ । *

---

* କେବଳ ସୌନ୍ଦର୍ଯ୍ୟ ଓ ସୁଗନ୍ଧ ବିସ୍ତାର ନିମନ୍ତେ ପୁଷ୍କରିଣି ଜଗତରେ ସୃଷ୍ଟ ହୋଇ ନାହାନ୍ତି । ଏ ସକଳ ଅସଂଖ୍ୟ ଅସଂଖ୍ୟ କୀଟ ପତଙ୍ଗର ଜୀବଧାରଣର ଉପାୟ । ପୁଷ୍ପ-ରସଜୀବୀ ପ୍ରାଣିମାନଙ୍କ ମଧ୍ୟରୁ ଅନେକ ପ୍ରକାର ନିଶାଚର । ରାତ୍ରି ଅନ୍ଧକାରରେ ଶୁକ୍ଳବର୍ଣ୍ଣ ଭିନ୍ନ ଅନ୍ୟାନ୍ୟ ବର୍ଣ୍ଣ ପୁଷ୍ପଙ୍କ ଦୃଷ୍ଟ ହୁଏ ନାହିଁ । ଅନନ୍ତ ଜ୍ଞାନୀ ଅନନ୍ତ କରୁଣାମୟ ପରମେଶ୍ୱର ସେହି କ୍ଷୁଦ୍ର ଜନ୍ମ ପ୍ରାଣିମାନଙ୍କ ସକାଶେ ଶୁକ୍ଳବର୍ଣ୍ଣ ପୁଷ୍ପ ରାତ୍ରରେ ଫୁଟାଇଥାନ୍ତି । ଏକଜାତୀୟ ଜଳଜ କୁମୁଦ ପୁଷ୍ପ ପ୍ରତି ଦୃଷ୍ଟିପାତ କରନ୍ତୁ; ରକ୍ତ ବର୍ଣ୍ଣ ଦିବସରେ, ଶ୍ୱେତ ବର୍ଣ୍ଣ ରାତ୍ରିରେ ଫୁଟିଥାଏ ।

ପ୍ରସ୍ଫୁଟିତ କୁସୁମରେ ପ୍ରଜାପତିଗଣ
ଉଡ଼ି ବୁଲି କରୁଥାନ୍ତି ମଧୁ ଅନ୍ୱେଷଣ ।
ମଧୁକରଗଣ ପୁଣି ଗୁଣୁଗୁଣୁ ସ୍ୱରେ
ବେଢ଼ିଥାନ୍ତି—ଧନୀ ପାଖେ ଭୃତ୍ୟ ସମାଜରେ ।
ଋତୁ ପର୍ଯ୍ୟାୟରେ ଫୁଟେ ପୁଷ୍ପ ନାନା ଜାତି,
ଶେଫାଳି ନଅଳି ମଲ୍ଲୀ କୁନ୍ଦ ଯାତି ଯୂଥୀ ।

ଯେ କାଳରେ କରେ ଗନ୍ଧ ବିସ୍ତାର କେତକୀ,
ଜଣାଯାଏ ପ୍ରସ୍ଫୁଟିତ କୁସୁମ କେତେକ ।
ଫୁଟିଲେ ଗୋଲାପ ଗଙ୍ଗଶିମଳୀ ନଅଳୀ,
ସର୍ବ ସ୍ଥାନେ ମଣେ ଗନ୍ଧ ଭଏ ଦେଇ ଢାଳ ।
ସୁଗନ୍ଧା ରଜନୀଗନ୍ଧା ତେପି ରାତ୍ରିରାଣୀ,
ନିଶିରେ ଶିଶିରେ ଯଥା ବନଠାକୁରାଣୀ ।
ସର୍ବଙ୍କ ଅବୃତା ଯଦା ରଜନୀ ତମିରେ,
ବିସ୍ତାର କରନ୍ତି ସର୍ବେ ଗନ୍ଧ ଅବନୀରେ ।
ବିବିଧ ପ୍ରକାର ଫଳ ଫଳେ ନାହିଁ ଊଣା,
ଜଗତ ହିତରେ ଝରେ କାହାର କରୁଣା ।
କାହ୍ନଅ ଜମ୍ବୀର ଟଭା କାଗଜୀ ନାରଙ୍ଗ,
ବିବିଧ ପ୍ରକାର ଲଙ୍କାଆମ୍ବ ମାତୁଲଙ୍ଗ ।
ବେଲ ଲିଚୁ ପିଜୁ ଜମ୍ବୁ ପନସ କଦଳୀ,
ସପୁରି କମଳା ଚୂତ ସୁଧାରସଁ ବଳ ।
ଜାମରୁଳ କରମଙ୍ଗା ଆତ ନାନାଜାତି,
ପିଜୁଳି ସପେଟା ବରକୋଳି ନେଣଗାଛି ।
ପାଚି ଝୁଲୁଥାଏ ଯେବେ ଥୋପି ଥୋପି ଡାଳେ,
କି ଅପୂର୍ବ ଶୋଭା କରେ ବିସ୍ତାର ସେକାଳେ ।

ସ୍ୱଦେଶୀ ବିଦେଶୀ ପୂର୍ଣ୍ଣ ଶାକ ମୂଳ ଫଳ,
ଗୃହସ୍ଥମାନଙ୍କ ପକ୍ଷେ ବ୍ୟଞ୍ଜନ ସମ୍ବଳ ।
ବାଡ଼ ପାଶେ ପାଶେ ପୁଣି ଉଡ଼େ ତୁଳାଗଛି,
ପବନ ପ୍ରବାହେ ଯାଏ ଇତସ୍ତତଃ ଛପି ।
କ୍ଷୁଦ୍ର ଶସ୍ୟକ୍ଷେତ୍ର ଖଣ୍ଡେ ଉଦ୍ୟାନର ପ୍ରାନ୍ତେ,
ସୁବାସିତ ଧାନ୍ୟ ଉପୁଜାଏ ବତ୍ସରାନ୍ତେ ।
ଫଳ ପତ୍ର ପୁଷ୍ପ ଯହିଁ କରେ ନେତ୍ରପାତ,
ବିଶ୍ୱପତି ପ୍ରତି ଭକ୍ତି ସହଜରେ ଜାତ ।
ବୀଜରୁ ଉତ୍ପନ୍ନ ବୃକ୍ଷ, ତହିଁ ଜାତ ଫଳ,
ଅନନ୍ତ ଅନନ୍ତ ସ୍ୱାମୀ ରଚନା କୌଶଳ ।
କାନନର ମଧ୍ୟଗତ ପୁଷ୍କରିଣୀ ଜଳେ
ବିବିଧ ପ୍ରକାର ପରିପୂର୍ଣ୍ଣ ମୀନଦଳେ ।
ସ୍ୱାମୀ ଧୀର—ଉଚ୍ଛୃଙ୍ଖଳ ଧନୀ ଯୁବା ପରି,
ଉତ୍କୃଷ୍ଟ ଗମ୍ଭୀର ଜଳେ ଚରନ୍ତେ ଶଫରୀ ।
ମାନବ ଜୀବନ ପାଇଁ ଯାହା ପ୍ରୟୋଜନ,
ରହିଛି ଉଦ୍ୟାନେ ପରିପୂର୍ଣ୍ଣ ଆୟୋଜନ ।
ଭୂମି ଦୋଷେ ଗ୍ରୀଷ୍ମକାଳେ ଥାଏ ଶ୍ରୀହୀନ,
ପ୍ରାବୃଟ ଆଗମେ ଧରୁ ଯୌବନ ନବୀନ ।
ଶରତ ବସନ୍ତ ହେମେ ଶସ୍ୟ ପୁଷ୍ପଭର,
କମଳା ଓ ମେଳ ବସି ଥାଆନ୍ତି ସଦର ।

* * *

ନୟନ-ରଞ୍ଜନ ପୁଷ୍ପ ସୁମଧୁର ଫଳ,
ଅନନ୍ତ ଅନନ୍ତସଂଖ୍ୟ ପୂର୍ଣ୍ଣ ଭୂମଣ୍ଡଳ ।
ମାନବ ସକାଶେ ପ୍ରଭୁ କରିଛ ସୃଜନ,
ତୁମ୍ଭର ତ ନାହିଁ ଏଥି ଲେଶ ପ୍ରୟୋଜନ ।

କି କୌଶଳେ ନିର୍ମିଛନ୍ତି ଫଳପୁଷ୍ପଚୟ,
ନିରୀକ୍ଷଣ କଲେ ହୁଏ ସ୍ତମ୍ଭିତ ହୃଦୟ ।
ନିତ୍ୟ ଦେଖେଁ କେତେ ପ୍ରାଣୀ ଜୀବନର ଆଶେ
ଆସୁଛନ୍ତି ପୁଷ୍ପ ଫଳପାଇଁ ତୋହର ପାଶେ ।
କେବଳ ତ ନୋହୁ ତୁହି ଶୋଭାର ଆଧାର,
ମନବ ବିହଗ କୀଟେ ଯୋଗାଉ ଆହାର ।
ତୋହର ପ୍ରବଳ ଶତ୍ରୁ ଦୁର୍ବୃତ୍ତ ବାନରେ,
ଯୋଗାଉ ତାହାଙ୍କୁ ମଧ୍ୟ ଖାଦ୍ୟ ଅକାତରେ ।

ସାଧୁଏ କରନ୍ତି ମଧ୍ୟ ଶତ୍ରୁ ଉପକାର,
ତୋହଠାରେ ନିଦର୍ଶନ ପ୍ରତ୍ୟକ୍ଷେ ତାହାର ।
ତୋହର ପ୍ରଶଂସା କେତେ ଗାଇଲି ଉଦ୍ୟାନ,
ଆପଣା ଦ୍ରବ୍ୟର କେବା କରେ ଗୁଣ ଗାନ ?
ମୋହର ଉଦ୍ୟାନ ତୁହି, ତୁ ତୁ ! ମିଛ କଥା,
ଘୋଷଣା କରୁ ତୁ ବିଶ୍ୱବିଧାତା ବାରତା ।

ତୃଣାଦଳଟିଏ କରି ନ ପାରେ ନିର୍ମାଣ,
କିପରି ବୋଲିବି ତୁହି ମୋହର ଉଦ୍ୟାନ ?
ଦେବତାବାଞ୍ଛିତ ସ୍ଥାନ ତୁହି ତ ମହାନ,
ତୋତେ ଲଭି ଆପଣାକୁ ମଣେ ଭାଗ୍ୟବାନ ।
ପୂର୍ଣ୍ଣ କର ମୋ କାମନା ହେ ଶାନ୍ତିକାନନ,
ତୋ ସେବାରେ ଗତ ହେଉ ଅନ୍ତିମ ଜୀବନ ।



# ଧର୍ମରାଜ୍ୟ ।



ଭୂତପାକ୍ଷୀ ଇତିହାସ କରୁଛି ପ୍ରମାଣ,
କେତେ ମହାବୀର ବଂଶେ ଥିଲେ ବିଦ୍ୟମାନ ।
କେତେ ରାଜା ମହାରାଜ ବିସ୍ତାରି ରାଜତ୍ୱ
ରଖିଥିଲେ କେତେ ଦେଶ ଦେଶାନ୍ତ ଅଧିକୃତ ।
ଜଗତେ ଭସାଇ ସ୍ରୋତ ମାନବ ରକ୍ତରେ
ଯୋଦ୍ଧା ଜାଳିଛନ୍ତି କେତେ ଦେଶ ଦେଶାନ୍ତରେ ।
କାହିଁ ସେ ସେମିରାମିସ — ଆଲେକଜେଣ୍ଡର ?
ଇବ୍ରାହିମ ଲୋଦି — କାହିଁ ମାମୁଦ — ବାବର ?
ଯେ ଆଲେକଜେଣ୍ଡର ଦିନେ କହିଥିଲେ ଦୁଃଖେ,
ନାହିଁ ଜିଣିବାକୁ ପୃଥ୍ୱୀ, ଯିବ କେଉଁ ମୁଖେ ?
ହାନିବଲ, ନେପାଲିନ ଫରାସୀ-ଈଶ୍ୱର —
ସମସ୍ତ ୟୁରୋପ ଥିଲା ଯାହାଙ୍କ କିଙ୍କର ।
ମାନବର ସ୍ୱାଧୀନତା ଧନ ପ୍ରାଣ ମାନ,
ଅକାରଣେ ହରି — ଥିଲେ ଜଗତେ ପ୍ରଧାନ ।
ମାନବ ଜୀବନ ତୁଚ୍ଛ ସେମାନଙ୍କଠାରେ,
ଲକ୍ଷ ଲକ୍ଷ ଲୋକ ବଧିଛନ୍ତି ବାରେ ବାରେ ।
ଶିଶୁ ନାରୀ ବୃଦ୍ଧ ରୋଗୀ ନ ଥିଲା ବିଚାର,
ବ୍ୟବସାୟ ଥିଲା ଲୋକ ଜୀବନ ସଂହାର ।
କେତେ ରମ୍ୟ ଉପବନ ଶୋଭନା ନଗରୀ,
ଯୋଦ୍ଧା ଜାଳି କରିଥିଲେ ମରୁଭୂମି ସରି ।

ମାନବ ଜୀବନ ଯାଠ ପତଙ୍ଗ ସମାନ
ପଦେ ଦଳ ଦେଇଛନ୍ତି ତାଙ୍କ ସେନାମାନେ ।
ସେମାନଙ୍କ ସିଂହାସନ ରତନମଣ୍ଡିତ,
କୋଟୀ ମୁଦ୍ରା ହୀର ମଣୀ ବୈଦୁର୍ଯ୍ୟ ଜଡ଼ିତ ।
ବହୁ ଲକ୍ଷ ସେନା ଥିଲେ ତାହାଙ୍କ ସେବକ,
ଆଦେଶକୁ ଗୃହଁ ଥାନ୍ତି କୋଟି କୋଟି ଲୋକ ।
କାହିଁ ସେ ରାଜତ୍ୱ ଏବେ ରତ୍ନସିଂହାସନ,
କାହାନ୍ତି ସେମାନେ, କାହିଁ ଗଲେ ସେନାଗଣ !

ନାହିଁ ନାହିଁ ସେମାନଙ୍କ ଆଧିପତ୍ୟ ଚିହ୍ନ,
ପୃଥିବୀ କମ୍ପାଇଥିଲେ ମାତ୍ର କେତେ ଦିନ ।
ପ୍ରତ୍ୟକ୍ଷ ପ୍ରମାଣ ଦେଖି ବୁଝିଯାଅ ଭାଇ,
ଅଧର୍ମର ଆଡ଼ମ୍ବର ନୁହେ ଚିରସ୍ଥାୟୀ ।
ରାଜାଏ ଯେତେକ କରିଥିଲେ ଅତ୍ୟାଚାର,
ସ୍ୱର୍ଗ ସିଂହାସନ ତଳେ ହେଉଛି ବିଚାର ।
ଦୟାମୟ ପ୍ରେମମୟ ଶାନ୍ତିମୟ ପ୍ରଭୁ,
ଅତ୍ୟାଚାର ତାଙ୍କ ରାଜ୍ୟେ ଚଳିବ କି ସବୁ ?
ପକ୍ଷାନ୍ତରେ ଦେଖ ଧର୍ମରାଜ୍ୟେ ରାଜାଗଣେ,
ଚିର ଆଧିପତ୍ୟ ଥିବ ଏ ବିଶ୍ୱ ଭୁବନେ ।

କେତେ ଦିନ କରି ଧର୍ମ ସୁନୀତି ପ୍ରଚାର
ମନୋରାଜ୍ୟେ କରିଥିଲେ ରାଜତ୍ୱ ବିସ୍ତାର ।
ଯେଉଁ ରାଜ୍ୟ କରି ଯାଇଛନ୍ତି ସଂସ୍ଥାପନା,
ତା ମହିମା ଶେଷ ହେବ ଯାଏ ଯିବ ଜଣା ।
କେ ଥିଲେ ସେମାନେ ! ମହାବୀର ? ବଳବନ୍ତ !
ଥିଲକ ଅତୁଳ ଧନ ? ସେନା ବା ଯାମନ୍ତ !

ବସିଥିଲେ କି ପ୍ରଭାର ରତ୍ନସିଂହାସନେ ?
କେତେ ରତ୍ନ ଲଗିଥିଲା ବସନ ଭୂଷଣେ ?
କେତେ ଧନ ରତ୍ନ ଥିଲା ତାଙ୍କ ଗନ୍ତାଘରେ ?
କେତେ ଲୋକ ଖଟିଥିଲେ ସେବକ ରୂପରେ ?
ନାହିଁ ନାହିଁ, ଥିଲେ ସବେ ଚୀର ବସ୍ତ୍ରଧାରୀ,
ସମ୍ପତ୍ତିର ସଂଖ୍ୟା ଶୂନ୍ୟ—ଦାଣ୍ଡରେ ଭିକାରୀ ।
ସୂତ୍ରଧର ପୁତ୍ର କେହୁ, ବଣିକ ସେବକ । *
ସାମାନ୍ୟ ବ୍ରାହ୍ମଣ ପୁତ୍ର, କେହୁ ପର୍ଯ୍ୟଟକ । ‡
ସେମାନଙ୍କ ସିଂହାସନ ମାନବହୃଦୟ,
ପୃଥ୍ୱୀ ଶେଷ ଯାଏ ଥିବ ଅକ୍ଷୟ ଅବ୍ୟୟ ।
ଯାବତ ଚନ୍ଦ୍ରାର୍କେ ଥିବ ତାହାଙ୍କ ରାଜତ୍ୱ,
ପାଳିବେ ଅବଶ୍ୟ କୋଟି ଲୋକ ତାଙ୍କ ମତ ।
କେତେ ରାଜରାଜେଶ୍ୱର ତାଙ୍କ ପଦଧୂଳି
କରିବେ ସାର୍ଥକ ପ୍ରାଣ ମସ୍ତକରେ ବୋଳି ।
ତାହାଙ୍କ ପବିତ୍ର ନାମ କରି ଉଚ୍ଚାରଣ
କରିବେ ସାର୍ଥକ ଜ୍ଞାନ ଆପଣା ଜୀବନ ।

---

* ଯୀଶୁ ଯୋସେଫ ନାମକ ଜଣେ ସାଧାରଣ ସୂତ୍ରଧରର ପୁତ୍ର ଥିଲେ । ମହମ୍ମଦ ଖଦିଜା ନାମ୍ନୀ ଗୋଟିଏ ଧନବତୀ ନାରୀର [illegible] ନାମକ ଗୋଟିଏ ମୃତ ସୋଦାଗରର କର୍ମଚାରୀ ଥିଲେ ।

‡ ଚୈତନ୍ୟ ଜଗନ୍ନାଥ ମିଶ୍ର ନାମକ ଜଣେ ସାଧାରଣ ବିପ୍ର ପୁତ୍ର । ରାଜପୁତ୍ର ବୁଦ୍ଧଦେବ ପୈତୃକ ରାଜ୍ୟ ପରିତ୍ୟାଗ ପୂର୍ବକ ଭିକ୍ଷାନ୍ନଦ୍ୱାରା ଜୀବିକା ନିର୍ବାହ କରି ଧର୍ମ ପ୍ରଚାର କରୁଥିଲେ ।

ଥିଲେକି ସେମାନେ କେତେ ସୈନ୍ୟ ଅଧିନାୟ ?
ଜଣଙ୍କର ଥିଲେ ବାର ଗୋଟି ମତ୍ସ୍ୟଧାୟ । (୧)
ଜଣକର ଥିଲେ ଏକ ମାତ୍ର ସ୍ତ୍ରୀଲୋକ, (୨)
ଅନ୍ୟ ଜଣଙ୍କର ଥିଲେ ପାଞ୍ଚଟି ଭିକ୍ଷୁକ । (୩)
ଏକ ମହାତ୍ମାଙ୍କ ସେନା କେତୋଟି ବୈରାଗୀ, (୪)
ଗୃହ ପାଞ୍ଚ ସେନା ଥିଲେ ଏକ ରାଜା ଲାଗି । (୫)
ମାତ୍ର ଅନନ୍ତ କୋଟି ତାହାଙ୍କ ସେନାମା
ଜାତ ହେବେ ଜଗତରେ ତାଙ୍କ ଆଜ୍ଞା ମାନି ।
କରିବେ ପାଳନ ପ୍ରଭୁମାନଙ୍କର ରାଜ୍ୟ,
ଜଗତେ ଯାବତ ଥିବ ମାନବ ସମାଜ ।
ପ୍ରଭୁମାନଙ୍କର ରାଜ୍ୟ କ୍ରମଶଃ ଉନ୍ନତ,
ହେବ ଦୂର ଲୋକଗଣ ଦୁର୍ଦ୍ଦଶା ଦୁର୍ଗତି ।
ପ୍ରାଣୀ ଉପକାର ଭକ୍ତି ପ୍ରୀତି ଥିଲା ଅସ୍ତ୍ର,
ଲୋକର ଲଜ୍ଜା ଥିଲା ସେମାନଙ୍କ ବସ୍ତ୍ର ।
ପାପଶତ୍ରୁ ବିପକ୍ଷରେ ସମର ଘୋଷଣା
କରିଥିଲେ ସର୍ବେ ମହାପ୍ରାଣ ମହାମନା ।
ଯେହୁ ଶତ୍ରୁ ତାଙ୍କ ପ୍ରତି କଲେ ଅତ୍ୟାଚାର,
କରନ୍ତି ତା ପ୍ରତି ପ୍ରେମ ପ୍ରୀତି ବ୍ୟବହାର ।
ପ୍ରାଣିର ଉଦ୍ଧାର ପାଇଁ ଆପଣା ଜୀବନ
ତୁଚ୍ଛ ମଣି କରୁଥାନ୍ତି ନିଯୁତ ଯତନ ।

---

(୧) ଯୀଶୁଙ୍କର ପ୍ରଥମ ଶିଷ୍ୟ ବାର ଜଣ ଧୀବର ।
(୨) ମହମ୍ମଦଙ୍କର ଧର୍ମମତ ଖଦିଜା ନାମ୍ନୀ ଗୋଟିଏ ସ୍ତ୍ରୀ ଗ୍ରହଣ କରିଥିଲେ ।
(୩) ବୁଦ୍ଧଦେବଙ୍କର ପ୍ରଥମ ଶିଷ୍ୟ ପାଞ୍ଚ ଜଣ ଭିକ୍ଷୁକ ।
(୪) ଚୈତନ୍ୟଦେବଙ୍କର ପ୍ରଥମ ଶିଷ୍ୟ କେତେ ଜଣ ବୈରାଗୀ ମାତ୍ର ।
(୫) ନାନକଙ୍କର ପ୍ରଥମ ଶିଷ୍ୟ ୪/୫ ଜଣ ସାଧାରଣ ଲୋକ ମାତ୍ର ଥିଲେ ।

ଜନ୍ମିଲେ ଯେ ସର୍ବଗୁଣା କାଳର ଆଧାର,
ସେଥି ପ୍ରତି ଥିଲା ନାହିଁ କାହାରି ବିଚାର ।
ବରଂ ପାର୍ଥିବ ଧନେ ଥିଲା ବଡ଼ ଘୃଣା,
ସନ୍ନ୍ୟାସୀ ଲୋକର ପ୍ରତି ନ ଥିଲା କରୁଣା ।
ଅବିନାଶୀ ମାନବାତ୍ମା ଉପରେ ଉଦ୍ଧାର,
ଜଗତରେ ପ୍ରେମ ପ୍ରୀତି ସହିତ ପ୍ରଚାର,
ଧର୍ମରାଜ୍ୟ ଥାପିବାକୁ ମାନବ ହୃଦୟେ
ଜଗନ୍ତ ପ୍ରାର୍ଥନା ନିତ୍ୟ ପ୍ରଭୁ ଦୟାମୟେ ।
ସ୍ମରିଲେ ଯେ ସର୍ବ ମହାତ୍ମାଙ୍କର ନାମ,
ଖଣ୍ଡିବ ଦୁର୍ଗତି, ପୂର୍ଣ୍ଣ ହେବ ମନସ୍କାମ ।

ଜୟ ଜୟ ଶଚୀପୁତ୍ର ଚୈତନ୍ୟ ଗୋସାଇଁ,
ପ୍ରେମିକ ଧାର୍ମିକ ତୁମ୍ଭ ସମାନରେ କାହିଁ ?
ଦଣ୍ଡ କମଣ୍ଡଳୁ ହସ୍ତେ ମୁଣ୍ଡିତମସ୍ତକ,
ମାର୍ଗରେ ଭିକ୍ଷୁକ, ସାର କୌପୀନ ମାତ୍ରକ ।
ଯେଉଁ ଭକ୍ତିମାର୍ଗ ଦେଖାଇଛ ଲୋକଗଣେ,
ରହିବ ଅନନ୍ତ କାଳ ଅକ୍ଷତ ଭୁବନେ ।

ଜୟ ଜୟ ମେରୀସୁତ ଯିଶୁ ମହାତ୍ରାଣ,
ଦେଇଛ ଜୀବନ ଲୋକେ କରିବାକୁ ତ୍ରାଣ ।
ତୁମ୍ଭ କ୍ରୂଶ ଦଣ୍ଡ ଚିହ୍ନ ରାଜରାଜେଶ୍ୱରେ
ମଣିବେ କୃତାର୍ଥ ଧରି ଗଲେ ମସ୍ତକରେ ।

ଜୟ ଜୟ ମହମ୍ମଦ ଏକେଶ୍ୱରବାଦୀ,
ଧର୍ମରାଜ୍ୟେ ତୁମ୍ଭ ସଙ୍ଗେ କେ ହେବ ବିବାଦୀ ।

ଚଙ୍ଗର କୋରେଶ ଜାତି ଖ୍ୟାତ ସମାଜରେ,
ବାନ୍ଧିଅଛ ସେମାନଙ୍କୁ ପାଞ୍ଚ ନମାଜରେ ।

ଧନ୍ୟ ଧନ୍ୟ ବୁଦ୍ଧଦେବ ଦୟାର ସାଗର,
ଧର୍ମରାଜ୍ୟେ ତୁମ୍ଭେ ମାନ ରାଜରାଜେଶ୍ୱର !
ପ୍ରାଣୀଙ୍କ ଦୁର୍ଦ୍ଦଶା ଦେଖି କରିଛ କ୍ରନ୍ଦନ,
ତେଜିଥିଲ ଦାରା ସୁତ ଜ୍ଞାତି ପରିଜନ ।
ମାର୍ଗେ ମାର୍ଗେ ଭ୍ରମି କରି ଭିକ୍ଷାନ୍ନ ଜୀବିକା
ଲୋକଗଣେ ଦେଇଅଛ ମୁକ୍ତିମାର୍ଗ ଶିକ୍ଷା ।

ଅପୂର୍ଯ୍ୟ ମହିମା ତୁମ୍ଭ ଧନ୍ୟ ହେ ନାନକ,
ଏକେଶ୍ୱରବାଦୀ ଧର୍ମରାଜ୍ୟସଂସ୍ଥାପକ ।
ଏକାନ୍ତ ଦରିଦ୍ର ଥିଲ ମାର୍ଗର ଭିଖାରୀ,
କେତେ ମହାଜ୍ଞାନୀ ତୁମ୍ଭ ପଦ ସେବାକାରୀ ।
ତୁମ୍ଭ ଉତ୍ତରାଧିକାରୀ ଶିଖଗୁରୁଗଣେ
ଅସାଧ୍ୟ ସାଧନା କରି ଶାସିଲେ ଯବନେ ।

ଧନ୍ୟ ଧନ୍ୟ ମହାମନା ହେ ରାମମୋହନ,
ତୁମ୍ଭ ଅବର୍ତ୍ତିବ ଦେଶ ଉଦ୍ଧାର କାରଣ ।
ବେଦ ମହାବାକ୍ୟ ଉପନିଷଦର ବାଣୀ
ଭୁଲାଇ କୁଶିକ୍ଷା ଦେଉଥିଲେ ଭଣ୍ଡଜ୍ଞାନୀ ।
କରିବା ସକାଶେ ଅଜ୍ଞମାନଙ୍କୁ ଉଦ୍ଧାର
ଭାରତରେ ସତ୍ୟ ଧର୍ମ କରିଛ ପ୍ରଚାର ।

ଧର୍ମରାଜ୍ୟେ ଅଧିକାରୀ ରାଜରାଜେଶ୍ୱରେ,
ପ୍ରଣତ ହେଉଛି ତୁମ୍ଭମାନଙ୍କ ପଦରେ ।
ମହାପୁଣ୍ୟମୟ ତୁମ୍ଭମାନଙ୍କର ନାମ,
ଯେ ନାମ ଉଚ୍ଚାରି ସିଦ୍ଧ ହେବ ମନସ୍କାମ ।



# ପଦ୍ୟମାଳା ।



ଖଳ ବୋଲେ, ସର୍ପ ତୁ ତ ଭାରି ପାଜି ଦୁଷ୍ଟ,
ପ୍ରାଣିହିଂସା କରୁ ଅକାରଣେ ହୋଇ ରୁଷ୍ଟ ।
ସର୍ପ ବୋଲେ, ମୋ ଦଂଶନେ ମରେ ଜଣେ ପ୍ରାଣେ,
ତୋ କଥାରେ କେତେ ବଂଶ ଛାରଖାର ଜାଣେ ।
କେ ମୋ ବନ୍ଧୁ ? ମିଷ୍ଟଭାଷୀ ପର ଉପକାରୀ,
ଧନ୍ୟ କେ ? ଲମ୍ପଟ ଶଠ ସମର୍ଥ ଭିଖାରୀ ।

କପର ମର୍ଯ୍ୟାଦା ଲୋଡ଼େ, ଯେବେ ନୃପ ଗୁଣୀ,
କପର ମହତ୍ତ୍ୱ ରଖ, ଯେବେ ଅଟ ଋଣୀ,
ଜ୍ଞାନୀ ହେବ କପାଁ ହିତବାକ୍ୟ ନାହିଁ ଶୁଣି,
ମଦ୍ୟପ ଗୃହରେ ନତ୍ୟ ନଶୀଥେ ଭାଜୁଣି ।

ମୃତ୍ୟୁପାଶରେ ବନ୍ଧ ସର୍ବେ,
ଅଜ ଯେସନେ ଯୂପ ସ୍ତମ୍ଭେ ।
ଯେ ଏହା ନ ପାରଇ ଜାଣି,
କପର ବୋଲି ତାକୁ ଜ୍ଞାନୀ ?

ଊଷର-ଭୂମି ମୂଢ଼ ମନ,
ଅକର୍ମା ଉପଳ ଯେସନ ।
ସୁବୀଜ ସୁଜ୍ଞାନ ବଚନ
କଲେ ତା ଯାଏ ଅକାରଣ ।

ମଧୁମକ୍ଷିକା ପିପୀଲିକା,
ଦେଖ ତ ଏମାନଙ୍କ ଜୀବିକା ।
ତାଙ୍କ ଭଣ୍ଡାର ଦେଖ ଆଜି,
ତୁମ୍ଭେ କିପାଇଁ ଉପବାସୀ ?

ଚନ୍ଦନ ବେଷ୍ଟିତ ଭୁଜଙ୍ଗେ,
ସମ୍ପଦ ଜଡ଼ିତ ଅଟଙ୍ଗେ,
ସାଗର ରତ୍ନର ଆକର,
ନିବାସ ପୁଣି ବିଷଧର,
ସମ୍ପଦେ ବିପଦନାଚସ୍ତୁ
ମିଳିତ ଅଛନ୍ତି ଉଭୟ ।

ଜଗତେ ଅତୁଳ ସମ୍ପତ୍ତି,
ଶସ୍ୟଶାଳିନୀ ବସୁମତୀ ।
ଯେତିକି କର ଉପାର୍ଜ୍ଜନ,
ସେତିକି ତବ ପ୍ରାପ୍ୟ ଧନ ।

ଜ୍ଞାନୀ ତାପସ ଶୂର କବି
ବିବୁଧ ଶାସ୍ତ୍ର ଅନୁଭବୀ,
ଲୋଭ ବସ୍ତୁରୁ ପରିତ୍ରାଣ
ପାଇ ନାହାନ୍ତି କେହି ଜାଣ ।

ପ୍ରଭୁ କରୁଣା ବିନା ଲୋକ
ନ ପାଏ ଜ୍ଞାନର ଆଲୋକ ।
କରୁଣା ଲଭିବା ସକାଶେ
ପ୍ରାର୍ଥନା କର ତାଙ୍କ ପାଶେ ।

ଲକ୍ଷ୍ମୀସ୍ୱରୂପା ଯେ ଲଳନା,
ଯେ ପୁଣି ବୃକ୍ଷପୀ ସମାନା ।
ତୁଳସୀ ବଢ଼େଇ ଉଦ୍ୟ
ଉଦ୍ଭିଦ ବଂଶକୁ ଉଦ୍ୟ ।

ଈଶ୍ୱରବିଶ୍ୱାସୀ ଯେ ଲୋକ,
ତା ମନେ ଥାଏ ନାହିଁ ଶୋକ ।
ଈଶ୍ୱର ଯାହାକୁ ସହାୟ,
କାହାକୁ କରିବ ସେ ଭୟ ?

ଜଗତରେ ସର୍ବତ୍ର ଅନନ୍ତ ସମ୍ପତ୍ତି,
ଜଗତେ ଅନନ୍ତ ପ୍ରାଣୀ କରନ୍ତି ବସତି ।
ପ୍ରତ୍ୟେକ ପ୍ରାଣୀକୁ ପ୍ରଭୁ ବାଣ୍ଟି ଦିଅ ଧନ,
କର୍ମଫଳ ଅନୁସାରେ ଯେତେ ପ୍ରୟୋଜନ ।

ହିଂସା କର କାହିଁ ଦେଖି ଅନ୍ୟ ଲୋକ ଧନ,
ତୁମ୍ଭେ କାହିଁ ବୋଲ କର ନାହିଁ ଉପାର୍ଜନ ?
ଆପଣେ ଅଯୋଗ୍ୟ ଯେବେ ଧନ ଉପାର୍ଜନେ,
ପରେ ହିଂସି ପାପ ଲାଭ କର କି କାରଣେ ?

ସକଳ ଶାସ୍ତ୍ରେ ଥାଉ ଜ୍ଞାନ,
ହେଉ କୁଳୀନ ଧନବାନ,
ଭକ୍ତି ନ ଥିଲେ ପ୍ରଭୁପଦେ,
ବୃଥା ଜୀବନ ସେ ସମ୍ପଦେ ।

ଗୁଣ ବୃଦ୍ଧି ଗୁଣିଜନେ,
ବସନ୍ତେ କୋକିଳ ଯେସନେ ।

ଅନ୍ଧ ବୁଝିବ ଗୁଣ କାହିଁ,
ବସନ୍ତ ଯେପ୍ରଭାବ କାଉ ।

ନାହିଁ ସେ ଗୁରୁ ପ୍ରୟୋଜନ,
ଯେ ଲୋକ ହରେ ଶିଷ୍ୟ ଧନ ।
ଯେ ଦିଏ ଶିଷ୍ୟେ ତତ୍ତ୍ୱଜ୍ଞାନ,
ତାହାଙ୍କୁ କରେଁ ମୁଁ ସମ୍ମାନ ।

ରହିବ ଯେପରି ସଙ୍ଗରେ,
ଗଣ୍ୟ ହେବଟି ସେ ରୂପରେ ।
କାଚ ସଙ୍ଗରେ ଥିଲେ ମଣି,
ତାହାକୁ କାଚ ମଧ୍ୟେ ଗଣି ।

ବୃଥା ସେ ଗ୍ରନ୍ଥ ଅଧ୍ୟୟନ,
ଯେବେ ନ କର ଆଚରଣ ।
ବଳଦ ବହେ ଚେନାଭାର,
ମାଧୁରୀ ନ ଜାଣେ ତାହାର ।

ଆହାର ନିଦ୍ରା ଭୟ ଜ୍ଞାନ—
ମାନବ ପଶୁରେ ସମାନ,
ବିଶେଷ ମାନବଙ୍କ ଠାରେ
ସୃଷ୍ଟିକର୍ତ୍ତାଙ୍କୁ ଜାଣି ପାରେ ।

ପାଉଁଶ ବୋଳିଲେ ଦେହରେ
ସନ୍ନ୍ୟାସୀ ଯେବେ ହେବେ ନବେ ।
ପଙ୍କରେ ଗଡ଼ିଲେ 'ଘୁଷୁରି,
ହେବ କି 'ସାଧୁ ବ୍ରହ୍ମଚାରୀ ?

ସର୍ବେ ଧାବନ୍ତ ସ୍ୱାର୍ଥ ପାଇଁ ;
ସ୍ନେହ ମମତା ଜ୍ଞାନ ନାହିଁ ?
ପାଣ୍ଡବେ ସ୍ନେହ ଥିଲେ ମନେ
ଶତ୍ରୁ ଭଜନ୍ତେ ଦୁର୍ଯ୍ୟୋଧନେ !

ପଢ଼ିଲି ନାନା ଦେଶ-ଭାଷା,
କାହିଁ ତ ନ ପୂରିଲା ଆଶା ।
ହେଉ ପଛକେ ସେ ଜଘନ୍ୟ,
ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।

ଦେଖିଲି ବୃନ୍ଦ ବନ୍ଧୁର,
କାଶ୍ମୀର କାମଶ୍ୟା କାନପୁର,
ପାଇଲି ନାହିଁ ଖୋଜି ଖୋଜି
ମୋ ମାତୃଭୂମିର ମାଧୁରୀ ।

ବାୟସ ବନ୍ଧୁଜନ ବଞ୍ଚେ ,
ମୂଷିକ ବନ୍ଧୁ ଖାଦ୍ୟ ସଞ୍ଚେ ।
ସାଧୁଙ୍କ ପଞ୍ଚସ୍ୱ ଜୀବନ—
ପରାର୍ଥେ ହୁଏ ପ୍ରୟୋଜନ ।

ସ୍ୱଗୋଷ୍ଠ ସ୍ୱଜନ ପାଳନ,
ବଇଧ ବଂଶ ସାଧନ
ଯେ କରେ ଧନ୍ୟ ସେହି ଲୋକ,
ଅଟେ ସେ ବଂଶର ଅଲୋକ ।

ନୃପତି ଯେବେ ଅତ୍ୟାଚାରୀ,
କଳହପ୍ରିୟା ଦୁଷ୍ଟା ନାରୀ,

ଅବାଧ ନବୋଧ ନନ୍ଦନ,
ଏହାକୁ କରବ ବର୍ଜନ ।

ଯା ପୁତ୍ର ନବୋଧ ନିର୍ଗୁଣୀ,
ଅପଥ ମୁଖର ତରୁଁଣୀ,
ପିତା ପୁତ୍ରରେ ଭିନ୍ନ ଭିନ୍ନ,
ବଂଶ ନାଶର ଏହି ଚିହ୍ନ ।

ଆତ୍ମସମ୍ମାନ ଆତ୍ମଜ୍ଞାନ,
ଆପଣା ଇନ୍ଦ୍ରିୟ ଶାସନ,
ଯେ ଲୋକ ଯେତେ ରକ୍ଷା କରେ,
ଧନ୍ୟ ସେ ଲୋକ ସମାଜରେ ।

ଆସିଛି କାହିଁ, ଯିବ କାହିଁ,
ରହିଛ କେତେ ଦିନପାଇଁ,
ଏହା ତ ଗଲା ନାହିଁ ଜଣା,
ଭ୍ରମୁଛ ପିନା ହୋଇ ବଣା ।

ସ୍ୱକର୍ମ ଫଳ ଭୁଞ୍ଜେ ଲୋକ,
ଦୈବ କେବଳ ଉପଲକ୍ଷ ।
ଭୂମିରେ ବୁଣିବ ଯେ ଶସ୍ୟ,
ତା ଫଳ କାଟିବ ଅବଶ୍ୟ ।

ଈଶ୍ୱରେ ସକଳ ଭୂତରେ,
ସକଳ ଭୂତରେ ଈଶ୍ୱରେ,
ଯେ ଦେଖେ ସେହି ଲୋକ ଜ୍ଞାନୀ,
ଅଛି ସେ ବ୍ରହ୍ମ-ତତ୍ତ୍ୱ ଜାଣି ।

କଟୁ କଥାରେ ପାଅ ବ୍ୟଥା,
କେପାଇଁ ବୋଲ କଟୁକଥା ।
ଯେଉଁ ପଦାର୍ଥ ଦେବ ଋଣ,
ନେଉଛି ପାଇବ ତା ପୁଣ ।

ଅସାଧ୍ୟ କି ଅଛି ଜଗତେ,
ସକଳ ଯତ୍ନର ଆୟତ୍ତେ ।
ମାନବ ଯାହା କରି ପାରେ,
କିପାଁ ଅସାଧ୍ୟ ତୁମ୍ଭଠାରେ ।

ଯତ୍ନରୁ ଜାତ ଶୁଭଫଳ,
ତେଜିଣ ସେ କାର୍ଯ୍ୟ ସକଳ,
କିପାଇଁ କର ମନ୍ଦ କର୍ମ,
ଏହା କି ନୁହେ ମତିଭ୍ରମ ?

ଯାବତ ସମ୍ପଦ ବିପଦ,
ଜୀବନ ଯଉବନ ପଦ,
ଜଗତେ ନୁହେ କିଛି ସ୍ଥିର,
ଏଥିକୁ ବୁଝି କର ସ୍ଥିର ।

କାନନେ ଯେବେ ଫୁଲ ଫୁଟେ,
ମଧୁ ଲୋଭରେ ଅଳି ଜୁଟେ ।
ମଧୁ ନ ଥିଲେ ସେ ପୁଷ୍ପରେ,
ଅଳି କି ଅନାଇବ ଥରେ ।

ଅର୍ଥ ଲୋକର ଅଭିଳାଷ,
ତେହୁଁ ହୁଅନ୍ତି ପ୍ରଭୁ ଦାସ ।

ଅର୍ଥରେ ନ ଥିଲେ ସମ୍ପର୍କ,
ହେ ପ୍ରଭୁ, ହାୟ କେଉଁ ଲୋକ ?

ଭଲ ଭଲରେ ଯେବେ ଚଳ,
ତା ତହୁଁ ଦୁଃଖ ହେବା ବଳି ।
ବିଶ୍ୱାସ ନ ଥିଲେ ସୋଦରେ,
ପ୍ରୀତି କି ଜନ୍ମିବ ଅନରେ ।

ଭଗିନୀ ଭାରତକାମିନୀ,
ହୃଦୟେ ଜୀବନଦାୟିନୀ ।
ବିଶେଷେ ଭାଗ୍ନଙ୍ଗନାଠାରେ,
ଗୁଣ ବିନାଶ ହଇ ପାରେ ।

ନଦୃତ ମୋ ଚିତ୍ତ ଚଞ୍ଚଳ,
ନାହିଁ ମୋ ଜ୍ଞାନ ଧର୍ମବଳ,
ଅବଶ ଇନ୍ଦ୍ରିୟ ସକଳ,
ପ୍ରଭୁ ମୋ ଭରସା କେବଳ ।

ସତ୍ୟ ମୁଁ ପ୍ରଭୁ ଦୁରାଚାରୀ,
ଅଜ୍ଞାନ ମୂର୍ଖ ପାପାଚାରୀ,
ମାତ୍ର ମୁଁ ତୁମ୍ଭ ସୃଷ୍ଟ ଜୀବ,
ବୃଥା କି ଏହା ଭୁଲିଯିବ ?

ହେ ବନ୍ଧୁ ହେ ଶତ୍ରୁ ତୁମ୍ଭର,
କାର୍ଯ୍ୟରେ ଲୋକ ଅମୃତର,
ଦେହର ବ୍ୟାଧି ଶତ୍ରୁ ଜାଣ,
ବନ୍ୟ ଔଷଧ ଦିଏ ପ୍ରାଣ ।

ବଶ ଯେ କରନ୍ତି ମନକୁ,
ସେ ଜିଣି ପାରେ ଜଗତକୁ ।
ନ ଥିଲେ ହିତାହିତ ଜ୍ଞାନ,
ତୁମ୍ଭେହିଁ ତୁମ୍ଭ ଶତ୍ରୁ ଜାଣ ।

ଲୋଭ କ୍ରୋଧକୁ ମନେ ସ୍ଥାନ
ନ ଦିଏ ଯେଉଁ ଜ୍ଞାନବାନ,
ତା ମିତ୍ର ଜଗତର ଲୋକ,
ତାହାର ଜୀବନ ସାର୍ଥକ ।

ଯା ଖ୍ୟାତି ନାହିଁ ଜଗତରେ,
ଲୋକର ମଙ୍ଗଳ ନ କରେ,
ନ ପାଞ୍ଚେ ସ୍ୱଦେଶ କଲ୍ୟାଣ,
ବୃଥା ଅଟଇ ତାହା ପ୍ରାଣ ।

ନ ବୁଝି କାର୍ଯ୍ୟ କରିବାର
ଅଟେ ବିପଦ ମୂଳାଧାର,
ବିଚାରି ଯେବା କାର୍ଯ୍ୟ କରେ,
କମଳା ଥାନ୍ତି ତା ପାଶରେ ।

କର୍ମସୂତ୍ରରେ ସର୍ବ ପ୍ରାଣୀ
ବନ୍ଧା ଅଛନ୍ତି ଥିବ ଜାଣି,
କର୍ମ ଯୋଗରେ କ୍ଷୁଦ୍ର, ବଡ଼,
କର୍ମ ବିହୀନେ ପ୍ରାଣୀ ଜଡ଼ ।

ନ ବସେ ମାଛି ଚନ୍ଦନରେ,
ବରଡ଼ ଖାଏ ନାହିଁ ଗୁଡ଼,

ସାଧୁ ଚେଷ୍ଟନ୍ତୁ ସାଧୁ ନରେ,
କାହୁଁ ଚେଷ୍ଟିବ ମୂର୍ଖ ମୂଢ଼ !

ଧନ ଜନରେ କେହୁ ଦୁଃଖୀ,
କେ ବସି ଭଲେ ପୁତ୍ର ମିତ୍ର,
ଅଳ୍ପ ଅଧିକ ସର୍ବେ ଦୁଃଖୀ,
ଜଗତେ ଏହାହିଁ ବିଚିତ୍ର ।

ମଧୁମକ୍ଷିକା ପିପୀଲିକା
ସମସ୍ତେ ହୋଇ କର୍ମବଶ
ନିରତେ ଲୋଡ଼ନ୍ତି ଜୀବିକା,
ଧିକ ସେ ମାନବ ଅଳସ ।

ବିନାଶ ଗଲା ଯେ ପଦାର୍ଥ,
ତା ପାଇଁ କରୁଛ ଭାବନା,
ତାହା କି ତୁମ୍ଭର ଯଥାର୍ଥ ?
ତେବେ ତ କିପାଇଁ ଶୋଚନା ?

ସୁନ୍ଦର କମଳେ ଶିଶିର ବିନ୍ଦୁ,
ସୁନ୍ଦର ଗଗନେ ପୂର୍ଣ୍ଣିମା ଇନ୍ଦୁ,
ତହିଁରୁ ସୁନ୍ଦର ଦିଶେ ଉଜ୍ଜ୍ୱଳ
ପର ଦୁଃଖେ ଯେଉଁ ନୟନ ଜଳ ।

ଦୁଃଖ ହେଉ ସୁଖ ହେଉ ଯାଉଛି ଯା' ବହି;
କି ହେବ ବୃଥାରେ ଆଉ ତାହା କଥା କହି,
ଜ୍ଞାନୀ ଲୋକ ସର୍ବ କାର୍ଯ୍ୟ ବିଚାରଣ କରେ,
ମୂଢ଼ ଲୋକ ଅନୁତାପ କରେ ପଶ୍ଚାତରେ ।

ପ୍ରାଚୀରକର୍ମୀକୋଷ୍ଠ ଯାଏ ଉପରକୁ ,
ଚଣ୍ଡାଳଗଣଙ୍କ ଯାଏ ତଳକୁ ତଳକୁ,
ଜଗତରେ ମାନବଙ୍କ ଲାଭ ଏହା ଜାଣ,
ନିଜ କାର୍ଯ୍ୟେ ଉଚ୍ଚ ସ୍ଥାନ ଅବା ନୀଚ ସ୍ଥାନ ।

ଅହେ ଧନୀ ଝଳଝଳ ହୁଅ ଗରବରେ,
ବୋଲ ବୋଲ କେତେ ଧନ ଅଛି ତୁମ୍ଭ ଘରେ,
ଜଗତରେ ଧନରାଶି ପର୍ବତ ପ୍ରମାଣ,
ତୁମ୍ଭ ଘରେ ଥିବା ଧନ ତହୁଁ ବିନ୍ଦୁ ଜାଣ ।

ଧନ ମାନ ପଦ ପାଇ ହୁଏ ଝଳ ଝଳ,
ନିଶ୍ଚୟ ସେ ଲୋକ ମନ ନିତାନ୍ତ ଦୁର୍ବଳ,
ଧନ ମାନ ପଦ ପାଇ ଗର୍ବ କରେ ନାହିଁ,
ନିଶ୍ଚୟ ସେ ଉପଯୁକ୍ତ ସେହି ଦ୍ରବ୍ୟପାଇଁ ।

ଇହ ପରକାଳେ ସୁଖୀ ସାଧୁର ଜୀବନ,
ଜୀବନ କାଳରେ ସୁଖୀ ଅଟନ୍ତି ସୁଜନ ।
ପାପୀ ଲୋକ ମର ବଞ୍ଚ ନାହିଁ ଲାଭ ଯଶ,
ଇହ ପର ଦୁଇ କାଳେ ତୁମ୍ଭର ଦୁର୍ଗତି ।

ମାତୁଳ ଶ୍ରୀକୃଷ୍ଣ ପୁଣି ପିତା ଧନଞ୍ଜୟ,
ଆପେ ମଧ୍ୟ ମହାବୀର ସୁଭଦ୍ରାତନୟ,
ସେହି ଅଭିମନ୍ୟୁ ଯୁଦ୍ଧେ ଲଭିଲେ ମରଣ,
ମୃତ୍ୟୁରୁ ପାଇବ ରକ୍ଷା ବୋଲ କେଉଁ ଜନ ।

ଅଯୋଧ୍ୟା ମଥୁରା ପୁରୀ ଯାଇଛି ବିନାଶ,
ଯଦୁବଂଶ ରଘୁବଂଶ ମଧ୍ୟ ଗଲେ ନାଶ,

ଜଗତ ମଧ୍ୟରେ ଭାଇ କଷ୍ଟ ନୁହେ ଚିର,
ଏହି କଥା ମନେ ଭଲ ବୁଝି କର ସ୍ଥିର ।

ଅହେ ଦେବି ତୁମ୍ଭେ ମୋର ଜନକ ଜନନୀ,
ଜଗଦ୍ଧାତ୍ରୀ ଜଗଦମ୍ବା ଜୀବନଦାୟିନୀ,
ତୁମ୍ଭେ ବିଦ୍ୟା ତୁମ୍ଭେ ବନ୍ଧୁ ସକଳ ସମ୍ପତ୍ତି,
ଶ୍ରୀଚରଣେ ଦିଅ ସ୍ଥାନ ଅହେ ବୀଣାପାଣି ।

ଭୁଲିଯାଏଁ ଅନ୍ୟେ ଯାହା କଲେ ଧନଦାନ,
ଭୁଲିଯାଏଁ ଅନ୍ୟ ମୋତେ କଲେ ଅପମାନ,
ଭୁଲିଯାଏଁ କରିଅଛି ପର ଉପକାର,
ଭୁଲିଯାଏଁ ଅନ୍ୟ ଯାହା କଲେ ଅତ୍ୟାଚାର ।

ଦୁଇ ଲୋକରେ ହିତକାରୀ
　　　　　ସେ ଅଟେ ଚତୁରୀ,
ଦୁଇ ଲୋକରେ ସୁଖକାରୀ
　　　　　ସେ ଅଟେ ମାଧୁରୀ,
ସନ୍ତାନବତୀ ସତୀ ନାରୀ
　　　　　ସେ ଅଟେ ସୁନ୍ଦରୀ,
ଇନ୍ଦ୍ରିୟଗଣ ବଶକାରୀ
　　　　　ସେହି ବୁଦ୍ଧିଚତୁରୀ ।

ହେ ପ୍ରେମ ନିର୍ଝର ସୁଖର ଆକର
ଶାନ୍ତି ମହା ନିକେତନ,
ଦୋଷ ଗୁଣେ ଦୁଃଖ ଦିଅ ଅବା ସୁଖ
ତବ ପଦରେ ଜୀବନ

ସଁପିଲି ହେ ପ୍ରଭୁ ଜଗତର ସବୁ
ଆଶା ଭରସା ନିକର,
ଜ୍ଞାତି ପରିଜନ ଯଶ ମାନ ଧନ
ମୁଁ ତୁମ୍ଭର ତୁମ୍ଭେ ମୋର ।




Printed by V. Kar, The U S. Press, Cuttack.